# ଭାଙ୍ଗି ପଡୁଥିବା ଭୂମି

(ତୃଇଟି ନାଟକ ଏକତ୍ର)

ନାଟ୍ୟକାର :

ଆନନ୍ଦ ଚନ୍ଦ୍ର ପହି

ପ୍ରଥମ ପ୍ରକାଶ:

୨୦୦୦

ପ୍ରକାଶିକା :

ଅରୁନ୍ଧତୀ ପହି

ଘର ନଂ: ଇ-୧୭୯, ୟୁନିଟ- ଆଠ

ଭୁବନେଶ୍ୱର-୭୫୧୦୧୨, ଫୋନ : ୫୬୦୩୯୨

ପ୍ରଚ୍ଛଦ ପରିକଳ୍ପନା:

ଆକାଶ ପହି

ମୁଦ୍ରଣ :

ଓଁକାର, ଏମ୍ ୫/୨, ଆଚାର୍ଯ୍ୟ ବିହାର

ଭୁବନେଶ୍ୱର

ମୂଲ୍ୟ :

୬୫ ଟଙ୍କା

ପ୍ରାପ୍ତିସ୍ଥାନ:

- ଓଡ଼ିଶା ଲେଖକ ସମବାୟ ସମିତି, ୟୁନିଟ୍-୨, ଭୁବନେଶ୍ୱର
- ସୁବର୍ଣ୍ଣରେଖା, କଟକ ରୋଡ଼, ଭୁବନେଶ୍ୱର
- ଗୁରୁଜୀ ବୁକ୍ ଷ୍ଟୋର, ଝାଞ୍ଜିରମଙ୍ଗଳା, କଟକ
- ବହିଘର, ସିନେମା ବଜାର, ବାଲେଶ୍ୱର

ଯାହାଙ୍କ ସହିତ ମୁଁ ମୋର ପ୍ରତ୍ୟେକ ନାଟକ ଓ ଗଳ୍ପ ସଂପର୍କରେ ଆଲୋଚନା
କରେ, ଯାହାଙ୍କ ସହିତ ପ୍ରତ୍ୟେକଟି ସାହିତ୍ୟସଭା ଓ
ନାଟକ ପ୍ରେକ୍ଷାଳୟରେ ମୁଁ ବସେ ସେଇ ବିଶିଷ୍ଟ ନାଟ୍ୟକାର ଓ
ଗାଳ୍ପିକ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକ ଙ୍କ ହାତରେ
ମୁଁ ଏ ନାଟକ ପୁସ୍ତକଟି ଅର୍ପଣ କରୁଛି ।

ଆନନ୍ଦ ଚନ୍ଦ୍ର ପହି

# ନାଟକ ସଂପର୍କରେ

''ଭାଙ୍ଗିପଡୁଥିବା ଭୂମି'' ପୁସ୍ତକରେ ଦୁଇଟି ନାଟକ ସ୍ଥାନୀତ ହୋଇଛି । ''ଭାଙ୍ଗିପଡୁଥିବା ଭୂମି'' ନାଟକଟି ସର୍ବଭାରତୀୟ ବେତାରନାଟକ ରଚନା ପ୍ରତିଯୋଗିତା ୧୯୯୨-୯୩ରେ ଦ୍ୱିତୀୟ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ ହୋଇଛି । ଏହି ନାଟକଟି ୧୯୯୪ ମସିହାରେ ଆକାଶବାଣୀ, ସମ୍ବଲପୁର ଓ ଆକାଶବାଣୀ କଟକଙ୍କ ସୌଜନ୍ୟରୁ ପ୍ରସାରିତ ହୋଇ ଶ୍ରୋତାଙ୍କ ଦ୍ୱାରା ଆଦୃତ ହୋଇଛି । ଏହି ନାଟକଟି ଭୁବନେଶ୍ୱରସ୍ଥ ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ ର କର୍ମଚାରୀ ସଂଘ ଦ୍ୱାରା ସ୍ଥାନୀୟ ସୂଚନା ଭବନରେ ୧୯୯୭ ମସିହାରେ ସଫଳ ଭାବେ ମଞ୍ଚସ୍ଥ କରାଯାଇ ଦର୍ଶକମାନଙ୍କ ଶ୍ରଦ୍ଧା ଭାଜନ ହୋଇପାରିଛି । ନାଟକରେ ଥିବା ସମ୍ଭାବନା ଦୃଷ୍ଟିରୁ ମଞ୍ଚ ଉପଯୋଗୀ କଲାବେଳେ ନାଟକର କଳେବର ବୃଦ୍ଧି କରାଯାଇଛି ।

ଦ୍ୱିତୀୟନାଟକ ''ମୁହଁସଂଜ'' ମୋ କ୍ଷୁଦ୍ରଗଳ୍ପ ମୁହଁସଂଜର ନାଟ୍ୟରୂପ । ଏହା ୧୯୯୫ ମସିହାରେ ଆକାଶବାଣୀ, କଟକ କେନ୍ଦ୍ର ସୌଜନ୍ୟରୁ ସଫଳତାର ସହ ପ୍ରସାରିତ ହୋଇ ବହୁ ଶ୍ରୋତାଙ୍କୁ ଆକୃଷ୍ଟ କରିଛି ।

ଏହି ପୁସ୍ତକରେ ସ୍ଥାନୀତ କରିବା ପୂର୍ବରୁ ମୁଁ ଉପରୋକ୍ତ ବେତାର ନାଟକ ଦୁଇଟିର ମଞ୍ଚରୂପ ପ୍ରଦାନ କରିଛି । କିନ୍ତୁ ଏଯାଏ 'ମୁହଁସଂଜ' ନାଟକଟି କୌଣସି ମଞ୍ଚରେ ଅଭିନୀତ ହୋଇନାହିଁ । ମଞ୍ଚସ୍ଥ ହେଲେ ଏ ନାଟକଟି ମଞ୍ଚ ସଫଳତା ଲାଭ କରିବ ବୋଲି ମୁଁ ଆଶାବାଦୀ ।

ଏହି ନାଟକ ପୁସ୍ତକଟିର ପ୍ରଚ୍ଛଦର ପରିକଳ୍ପନା କରିଛି ମୋ ସାନଝିଅ ଶ୍ରଦ୍ଧେୟା ଆକାଶ ପହି ଏବଂ ଏହି ପୁସ୍ତକର ପ୍ରକାଶନ ଦାୟିତ୍ୱ ମୋର ସାହିତ୍ୟାନୁରାଗୀ ସହଧର୍ମିଣୀ ଶ୍ରୀମତୀ ଅରୁନ୍ଧତୀ ପହି ବହନ କରିଛନ୍ତି । ସେ ଦୁଇଜଣଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ନିହଲ ପ୍ରସାଦ,
ତା ୧୫-୯-୨୦୦୦ରିଖ ।

ଆନଂଦ ଚଂଦ୍ର ପହି

# ନାଟକ ସୂଚୀ

# ଭାଙ୍ଗିପଡୁଥିବା ଭୂମି

(ସର୍ବ ଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗୀତା,
୧୯୯୨-୯୩ ମସିହାରେ ଦ୍ୱିତୀୟ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ ।)

ଆନଂଦ ଚଂଦ୍ର ପହି

"ଭାଙ୍ଗିପଡୁଥିବା ଭୂମି" ନାଟକଟି ଆକାଶବାଣୀ ସମ୍ବଲପୁର କେନ୍ଦ୍ରଙ୍କ ସୌଜନ୍ୟରୁ ତା ୧୮-୫-୯୪ରିଖରେ ପ୍ରସାରିତ। ଏହି ନାଟକର ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ :-

| | | | |
|---|---|---|---|
| ❑ | ସୁନିଲ | | ଡଃ ପ୍ରେମଚାନ୍ଦ ଦାସ |
| ❑ | ଭୋଳି | | ବିମଳ କିଶୋର ନନ୍ଦ |
| ❑ | ସାରଙ୍ଗ | | ରଣଜିତ୍ କୁମାର ଦେହୁରୀ |
| ❑ | ମହେନ୍ଦ୍ର | | କୃଷ୍ଣଚଂଦ୍ର ଆଚାର୍ଯ୍ୟ |
| ❑ | ଆଲୋକ | | ପ୍ରଦ୍ୟୁମ୍ନ ମୋହନ ଦାସ |
| ❑ | ମଦନ | | ପ୍ରଦୀପ କୁମାର ପଣ୍ଡା |
| ❑ | ଶରତ | | ପ୍ରିୟବ୍ରତ ବାବୁ |
| ❑ | ପୋଲିସ୍ ଇନିସ୍‌ପେକ୍ଟର | | ସତ୍ୟ ନାରାୟଣ ବେହେରା |
| ❑ | ଅସୀମା | : | ରେଖା ଉଦ୍‌ଗାତା |
| ❑ | ନିର୍ଦ୍ଦେଶନା | : | ଭାଗିରଥୀ ମିଶ୍ର |

"ଭାଙ୍ଗିପଡୁଥିବା ଭୂମି" ନାଟକଟି ଭୁବନେଶ୍ୱରସ୍ଥ ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ର କର୍ମଚାରୀ ସଂଘ ଦ୍ୱାରା ସ୍ଥାନୀୟ ସୂଚନା ଭବନରେ ତା୫-୬-୧୯୯୭ ରିଖରେ ମଞ୍ଚସ୍ଥ ହୋଇଥିଲା। ଏହି ନାଟକର ବିଭିନ୍ନ ଚରିତ୍ରରେ ଅଭିନୟ କରିଥିଲେ :-

| | | | |
|---|---|---|---|
| ❑ | ସୁନିଲ ମହପାତ୍ର | | ଦେବଦତ୍ତ ପଟ୍ଟନାୟକ |
| ❑ | ଅସୀମା | | ସୁବ୍ରତା ରୟ |
| ❑ | ଭୋଳି | | ପ୍ରଫୁଲ୍ଲ କୁମାର ମହାପାତ୍ର |
| ❑ | ମହେନ୍ଦ୍ର | | ପଠାଣି ଜେନା |
| ❑ | ଶଙ୍କର | | ତ୍ରିଲୋଚନ ପତି |
| ❑ | ସାରଙ୍ଗ | | ଚିନ୍ତାମଣି ବିଶ୍ୱାଳ |
| ❑ | ଶରତ | | ତସତୋଷ ମିଶ୍ର |
| ❑ | ଆଲୋକ | | ଶିଶିର ମହାନ୍ତି |
| ❑ | ମଦନ | | ଗାଲି ମାଧବ ନାୟକ |
| ❑ | ପୋଲିସ୍ ଇନିସ୍‌ପେକ୍ଟର | | ବଟ କୃଷ୍ଣ ପଣ୍ଡା |
| ❑ | କନେଷ୍ଟବଲ | : | ସୋମେଶ୍ୱର ହଂସ |
| ❑ | ନିର୍ଦ୍ଦେଶନା | : | ଧୀର ମଲ୍ଲିକ |

# ପ୍ରଥମ ଦୃଶ୍ୟ

(ଗାଆଁ ମୁଣ୍ଡରେ ଠିଆ ହୋଇଛନ୍ତି ଆମେରିକା ଫେରନ୍ତା ପ୍ରଫେସର ସୁନିଲ ମହାପାତ୍ର ଓ ତାଙ୍କ ଉଚ୍ଚ ଶିକ୍ଷିତା କନ୍ୟା ଅସୀମା । ପ୍ରଫେସର ପିନ୍ଧିଛନ୍ତି ପ୍ୟାଣ୍ଟ ଓ କୋଟ୍ । ଅସୀମା ପିନ୍ଧିଛନ୍ତି ଜିନ୍ ପ୍ୟାଣ୍ଟ ଓ ଜିନ୍ ସାର୍ଟ । ଦୁହିଁଙ୍କ ହାତରେ ଦୁଇଟା ବଡ ବଡ ବାକ୍ସ । ଅସୀମା ବେକରେ ପକାଇଛନ୍ତି କ୍ୟାମେରା ।)

ସୁନିଲ : (ବ୍ରିଫ୍‌କେଶଟା ତଳେ ଥୋଇ) ସେଇ ଯେଉଁ ପୋଖରୀଟା ଦେଖିଲୁ ସେଇଟା ଆମ ଗାଆଁ ପୋଖରୀ । ସେଇ ପୋଖରୀରେ ମୁଁ ପିଲାଦିନେ କେତେ ପହଁରିଛି, କୁଡ଼ିଛି, ମାଛ ଧରିଛି ।

ଅସୀମା : କାହିଁ ସେ ପୋଖରୀଟାରେ ତ କେହି ଜଣେ ଲୋକ ଗାଧୋଉ ନଥିଲେ ?

ସୁନିଲ : ମୁଁ ଆଶ୍ଚର୍ଯ୍ୟ ହେଉଛି ଏ ଗାଧୁଆ ବେଳଟାରେ ମଧ୍ୟ ପୋଖରୀରେ କେହି ଜଣେ ହେଲେ ନାହିଁ । କିନ୍ତୁ ଆମ ପିଲାଦିନେ ସକାଳୁ ରାତି ଘଡିଏ ପର୍ଯ୍ୟନ୍ତ ସେ ପୋଖରୀରେ ଗାଧୁଆ, ପାଧୁଆ ଲାଗିଥିଲା । ମୋର ମନେ ଅଛି, ଖରାଦିନେ ସଂଜବେଳକୁ ଆମେ ସେଇ ପୋଖରୀରେ ଗାଧୋଉଥିଲୁ । ଦିନେ ଦିନେ ଆକାଶରେ ଜହ୍ନ ପଡ଼ିଲାଏ ଆମେ ସେ ପୋଖରୀରେ ପହଁରୁଥିଲୁ ।

ଅସୀମା : ଆଃ, ସେ ଅନୁଭୂତି କି ଚମତ୍କାର ହୋଇ ଥିବ !

ସୁନିଲ : ଏବେ କିନ୍ତୁ ସେ ପୋଖରୀର ପାଣି ଖୁବ୍ ଅପରିଷ୍କାର । ଗାଆଁର ସବୁ ପ୍ରକାର ଅଳିଆ, ମଇଳା ପୋଖରୀ ପାଣିରେ ପଡ଼ୁଛି । ପୋଖରୀ ସାରା ଦଳ ଭିଡ଼ିଛି । ପାଣିଟା କେମିତି ଦୁର୍ଗନ୍ଧ କରୁଚି ।

ଅସୀମା : ସେ ପୋଖରୀର ପାଣି ଯାହା ହେଇଚି, ସେଥିରେ ଗାଧୋଇଲେ ଦେହ ଖରାପ ହେବ । ଆଛା ଡାଡ଼ି ! ଚାଲ

ପରା କହୁଥିଲ ଆମ ଗାଆଁ ଚାରିପାଖେ ଅନେକ ଗଛ ଥିଲା, ଆମ୍ବ ତୋଟା ଥିଲା ? କାଇଁ ଗୋଟେ ହେଲେ ଗଛ ତ ଦିଶୁନେଇଁ ?

ସୁନିଲ : ମୁଁ ବି ଆଶ୍ଚର୍ଯ୍ୟ ହେଉଛି !

ଅସୀମା : ଏଇଟା ଆମ ଗାଆଁ ନୁହଁ କି ଡ଼ାଡ଼ି ?

ସୁନିଲ : କ'ଣ କହିଲୁ ମାଆ ? ମୋ ନିଜ ଗାଁ, ଯେଉଁଠି ମୁଁ ପିଲାଦିନେ ଖେଳିଛି, ବୁଲିଛି, ପଢ଼ିଛି, ବଢ଼ିଛି, ଆମେରିକାରେ ୩୦ ବର୍ଷ କଟେଇଲି ବୋଲି କ'ଣ ତାକୁ ଚିହ୍ନି ପାରିବି ନାହିଁ ? ଏ ଗାଆଁ ମାଟି ଛୁଇଁଲେ ମୋ ଦେହରେ ଶିହରଣ ଖେଳୁଛି । ଏଇଟା ନିଶ୍ଚୟ ଆମ ଗାଆଁ ।

ଅସୀମା : ତାହେଲେ ଗାଆଁ ଭିତରକୁ ଚାଲ, ଏଠି ଠିଆ ହେଲ କାହିଁକି ? ଆମ ଘରଟା ଦେଖିବାକୁ ମୋର ଭାରି ଇଚ୍ଛା ହେଲାଣି । ଆମ ଘରଟା କ'ଣ ଗାଆଁ ମଝିରେ ?

ସୁନିଲ : ନା, ଗାଆଁ ସେମୁଣ୍ଡରେ । ଏଇଠି ମଙ୍ଗଳାପୀଠ ଥିଲା, ସେଟା ବି କୁଆଡ଼େ ଗଲାଣି ? ଠାକୁର କୁଆଡ଼େ ଗଲେ ?

ଅସୀମା : ତମର ଠିକ୍ ମନେ ଅଛି, ଏଇଠି ମଙ୍ଗଳାପୀଠ ଥିଲା ?

ସୁନିଲ : ହଁ ମୋର ଠିକ୍ ମନେ ଅଛି । ଏଇଠି ଥିଲା ମସ୍ତବଡ଼ ବରଗଛ । ଖୁବ୍ ଝଙ୍କାଳିଆ । ଋଷିଙ୍କ ଜଟା ପରି ଅନେକ ଓହଳ ଲମ୍ବିଥିଲା ସେ ଗଛରୁ । ଆମେ ସେ ବର ଓହଳରେ ଦୋଳି ଖେଳୁଥିଲୁ । ମୁଁ ଥରେ ଦୋଳି ଖେଳୁ ଖେଳୁ ପଡ଼ିଯାଇ ବେହୋସ ହୋଇ ଯାଇଥିଲି ।

ଅସୀମା : କେତେ ଉଚ୍ଚରୁ ପଡ଼ିଥିଲ କି ?

ସୁନିଲ : ଖୁବ୍ ଉଚ୍ଚରୁ । ମୋ ମୁଣ୍ଡ ଫାଟିଯାଇଥିଲା । (ମୁଣ୍ଡର ବାଳ ଖେଳାଇ କ୍ଷତ ଚିହ୍ନ ଦେଖାଇଲେ) ଦେଖୁନଭଁ ଏଇଠି କେଡ଼େ ଚିହ୍ନଟେ ଅଛି ।

ଅସୀମା : ହଁ, ଖୁବ୍ ବଡ଼ ଚିହ୍ନଟେ ।

ସୁନିଲ : ବରଗଛ ମୂଳେ ମଙ୍ଗଳାଙ୍କ ମୂର୍ତ୍ତି ଥିଲା । ତାଙ୍କ ଚାରିପାଖରେ ପୋଡ଼ା ମାଟିର ଅନେକ ନାଲି ଟେରାକୋଟା ଘୋଡ଼ା ଥିଲା । କିନ୍ତୁ ଏଠି କ'ଣ କିଛି ନାହିଁ ?

ଅସୀମା : ବାଟ ଭୁଲି ଆମେ ଅନ୍ୟ କେଉଁ ଗାଆଁକୁ ଆସିଯାଇନା ତ ?

ଜଣେ କିଏ ଏ ଆଡ଼କୁ ଆସୁଛନ୍ତି, ତାଙ୍କୁ ପଚାର ଏଟା କୋଉ ଗାଆଁ ।

ସୁନିଲ : ଅନ୍ୟକୁ ନିଜ ଗାଆଁ ନାଆଁ ପଚାରିବା ଲଜ୍ଜାକର କଥା ମାଆ ! ଏଇଟା ଆମ ଗାଆଁ । ଏଇ ଯେଉଁ ଲୋକ ଆସୁଛି, ମୁଁ ତାକୁ ଚିହ୍ନିଚି । ସିଏ ଆମ ଗାଆଁର ଭୋଳି ।

ଅସୀମା : ଭୋଳି କିଏ ?

ସୁନିଲ : ଭୋଳି ବାରିକ ।

(ଭୋଳି ଆସି ସୁନିଲ ମହାପାତ୍ରଙ୍କୁ ନମସ୍କାର କଲା ।)

ଭୋଳି : କିଏ ସୁନିଲବାବୁକି ? ଜୁହାର ଆଜ୍ଞା ।

ସୁନିଲ : (ପ୍ରତି ନମସ୍କାର ଜଣାଇ) କ'ଣ ଭୋଳି ! ତୋର ସବୁ ଭଲ ତ ?

ଭୋଳି : କ'ଣ ଆଉ ଭଲ ବାବୁ ? (କାଶିଲା)

ସୁନିଲ : କ'ଣ ଦେହ ଭଲ ନାହିଁ ? ଏମିତି କାଶୁଚୁ ଯେ ?

ଭୋଳି : (ସେମିତି କାଶୁ କାଶୁ) ନା । ଦେହଟା ଆଉ ଜମା ଭଲ ରହୁନେଇଁ । ଶ୍ୱାସରୋଗଟା ମତେ ଅଧାମରା କଲାଣି ।

ସୁନିଲ : କିଛି ଚିକିତ୍ସା କରୁନଉଁ କି ?

ଭୋଳି : କେତେ ଓଷଦ ଖାଇଲିଣି, କିଛି କାମ ଦଉନେଇଁ ।

ସୁନିଲ : ଶ୍ୱାସ କେମିତି ହେଲା ?

ଭୋଳି : ସେ କଥା ମୁଁ କେମିତି କହିବି ? ଆମ ଗାଆଁର ବହୁତ ଲୋକଙ୍କୁ ଏବେ ଶ୍ୱାସ ନହେଲେ ଯକ୍ଷ୍ମା ।

ସୁନିଲ : କ'ଣ ବୁଢା, ବୁଢ଼ୀଙ୍କୁ ନା ଅଳ୍ପ ବୟସର ଲୋକଙ୍କୁ ?

ଭୋଳି : ରୋଗ କ'ଣ ବଅସ ଦେଖୁଚି ? ଟୋକା, ଟୋକୀ, ପିଲାଛୁଆ, ବୁଢ଼ାବୁଢ଼ୀ ସମସ୍ତଙ୍କୁ ଧରୁଚି ।(ଅସୀମାକୁ ଚାହିଁ) ସିଏ କିଏ ?

ସୁନିଲ : ଇଏ ମୋ ଝିଅ ଅସୀମା । ହଁ । ଅସୀମା ! ଅଙ୍କଲ୍‌ଙ୍କୁ ନମସ୍କାର କର ।

(ଅସୀମା ଭୋଳିକି ନମସ୍କାର କଲା)

ଭୋଳି : ବୁଢ଼ୀଟିଏ ହେଇଥା ମାଆ ।

ସୁନିଲ : ଆଛା ଭୋଳି ! ଏଇଠି କୋଉଠି ମଙ୍ଗଳାପୀଠ ଥିଲା, କୁଆଡ଼େ ଗଲା ?

## ଭାଙ୍ଗିପଡୁଥିବା ଭୂମି : ୧୨

ଭୋଳି : ମଙ୍ଗଳାପୀଠ ଆଜିକି ପାଞ୍ଚବରଷ ହେଲା ଭାଙ୍ଗି ଗଲାଣି ।

ସୁନିଲ : ଭାଙ୍ଗି ଗଲାଣି ?

ଭୋଳି : ଘୋର କଳିକାଳ ସୁନିଲବାବୁ ! ମୂର୍ତ୍ତିଚୋରମାନେ ମଙ୍ଗଳାଙ୍କ ମୂର୍ତ୍ତିଟାକୁ ନେଇକି ବିଦେଶ ଚାଲାଣ କରିଦେଲେ । (କାଶିଲା)

ଅସୀମା : ହଁ ଅଙ୍କଲ ମୁଁ ନିଉଜ ପେପରରୁ ପଢ଼ିଥିଲି ଅନେକ ଇଣ୍ଡିଆନ ଆଣ୍ଟିକ ମୂର୍ତ୍ତିମାନଙ୍କୁ ବିଦେଶକୁ ଚୋରା ଚାଲାଣ କରାଯାଉଛି ।

ସୁନିଲ : ଏ ଦେଶର କଳା, ସଂସ୍କୃତିକୁ ଏବେ ବିଦେଶରେ ବିକ୍ରି କରି କିଛି ଚୋରାବେପାରୀ ରାତାରାତି ବଡ଼ଲୋକ ହେଉଛନ୍ତି । ମଙ୍ଗଳାଙ୍କ ବରଗଛଟା କୁଆଡ଼େ ଗଲା ?

ଭୋଳି : ଗାଁ ଟୋକାଏ ବରଗଛକୁ ହାଣିକି ବିକି ଦେଲେ । ସେଇ ଜାଗାରେ କ୍ଳବଘର ତିଆରି କରି ଦେଇଛନ୍ତି ।

ସୁନିଲ : କ୍ଳବଘର କରିବା ପାଇଁ ତାଙ୍କୁ କଣ ଆଉ କୋଉଠି ଜାଗା ମିଳିଲା ନାହିଁ ? କେତେନାହିଁ କେତେପୁରୁଷରୁ ସେଠି ମଙ୍ଗଳାପୀଠ ଥିଲା । ଏବେ ସେଠି ମଙ୍ଗଳାଙ୍କ ମୂର୍ତ୍ତି ନଥିଲେ କ'ଣ ହେଲା ? ସେଟାତ ମଙ୍ଗଳାପୀଠ ।

ଭୋଳି : ସେ କଥା ସେମାନଙ୍କୁ କିଏ କହିବ ? ଯିଏ କହିବ ସିଏ ଖାଲି ମାଡ଼ ଖାଇବ । କ୍ଳବଟୋକାଗୁଡ଼ାକ ଭାରି ହୁରୁମା । ସାମାନ୍ୟ କଥାରେ ଯାକୁ ତାକୁ ମାରଧର କରୁଚନ୍ତି । (କାଶିଲା)

ସୁନିଲ : ସେମାନେ କିଛି କାମଧନ୍ଦା କରୁଛନ୍ତି ନା, କେବଳ କ୍ଳବରେ ବସି ହେଁହେଁ ଫେଁଫେଁ ହଉଚନ୍ତି ?

ଭୋଳି : (ଏକଡ଼ ସେକଡ଼କୁ ଚାହିଁ ଚାପା କଣ୍ଠରେ କହିଲା) କୁଟା ଖଣ୍ଡକୁ ଦିଖଣ୍ଡ କରୁ ନାହାଁନ୍ତି । ଦିନରାତି ନାଚ, ଗୀତ, ଖେଳ ଆଉ ଯାକୁ ମାର ତାକୁ ଧର କରୁଚନ୍ତି ।

ସୁନିଲ : ଆମ ଗାଁ ଚାରିପଟେ ଯେଉଁ ଆମ୍ବତୋଟା ଥିଲା, ସେସବୁ କୁଆଡ଼େ ଗଲା ?

ଭୋଳି : ସେ କଥା କୁହନା ସୁନିଲବାବୁ ? (କାଶିଲା) ଖାଲି କ'ଣ ଆମ୍ବ ଗଛ ? ଆମ୍ବ, କଇଁଆ, ପଣସ, କେନ୍ଦୁ, ବର, ଓସ୍ତ ଏମିତି ଗାଁରେ ଯେତେ ଗଛ ଥିଲା ସବୁପରା ଏଇ ଗାଁ ଲୋକେ ହାଣିକି ବିକିଦେଲେ । ଆମ ଗାଁ ମହେନ୍ଦ୍ର ବିଶ୍ୱାଳକୁ ତ ତମେ ଚିହ୍ନିଥିବ ?

ଆନନ୍ଦ ଚନ୍ଦ୍ର ପତି

ସୁନିଲ : କାହିଁକି କ'ଣ ହେଲା ?

ଭୋଳି : ସିଏ ସବୁ ଗଛ ହାଣିକି ନେଇ କଲିକତା ବେପାରୀଙ୍କି ବିକିଦେଲା । ଏଇନେ ଗାଆଁ ଲୋକେ ଜାଳେଣି କାଠ ପାଇଁ ବାର ହୀନସ୍ତା ହଉଚନ୍ତି ।

ସୁନିଲ : ମଣିଷର ନାଆଁ ପରି ସବୁ ଆମ୍ବ ଗଛର ନାଆଁ ଥିଲା ?

ଅସୀମା : ଭେରି ଇଣ୍ଟେରେଷ୍ଟିଙ୍ଗ୍ ! ଆମ୍ବ ଗଛର ନାଆଁ ଥିଲା ? ପୁଣି ମଣିଷର ନାଆଁ ପରି ?

ସୁନିଲ : ହଁ ମାଆ ।

ଅସୀମା : ଆମ୍ବ ଗଛର କ'ଣ ନାଆଁ ଥିଲା- ସୀମାଦ୍ରି, ଶରତ, କୈଳାସ, ମୋନାଲିସା, ଲିଚା, ଚନ୍ଦ୍ରିକା, ସାଗରିକା ?

ସୁନିଲ : (ହସିଲେ) ଆରେ ନାନା । ସେମିତି ନୁହଁ ।

ଅସୀମା : ଆଉ କେମିତି ?

ସୁନିଲ : ତମର ସେ ନାଆଁ ସବୁ ମନେ ଅଛି ଭୋଳି ? ଖୁବ୍ ବଢିଆ ନାଆଁ ।

ଭୋଳି : କେଇଜାଣି, ମନେ ପକେଇଲେ ସିନା କହିବି ?

ସୁନିଲ : ମୋର କିନ୍ତୁ ନାଆଁ ଗୁଡ଼ିକ ଏପର୍ଯ୍ୟନ୍ତ ମନେ ଅଛି ।

ଭୋଳି : (ହସିଲା) କହୁନ, କୁହ ।

ସୁନିଲ : ନେଡ଼େଇ, ନବାତେଇ, କାଙ୍କେଇ, ସୁନ୍ଦରୀ, ଗାଲପୋଡ଼ି, ରସୁଣିଆ, କଦଳିଆ, ନଡିଆ, ଚେପେଚି, ବାଘନଖୀ, ଘୁମା ଆଉ.... ଆଉ.... ନା, ଆଉ ମନେ ପଡୁନେଇଁ ।

ଭୋଳି : ଜହ୍ନ ଘୁଉଡ଼ି, ତରାଘୁଉଡ଼ି, ବେଲେଇ ।

ସୁନିଲ : ଢେନାଘର ତୋଟାରେ ସେଇ ଯୋଉ ଗଛରେ ବଡ଼ ବଡ଼ ଆମ୍ବ ଫଳୁଥିଲା, ତାଆ ନାଆଁଟା କ'ଣ ?

ଭୋଳି : କୋଉ ଗଛ ?

ସୁନିଲ : ଯେଉଁ ଗଛର ଆମ୍ବ ଖୁବ୍ ବଡ ବଡ଼ ।

ଭୋଳି : ଯୋଉ ଆମ୍ବ ତଳେ ପଡ଼ିଲେ ଚୋଉ ଚାଙ୍ଗଡ଼ ହୋଇ ଫାଟି ଯାଉଥିଲା, ସେଇଟା ତ ?

ସୁନିଲ : ହଁ, ସେଇଟା । କ'ଣଟି ତାଆ ନାଆଁ ? ଭାରି ବଢିଆ ନାଆଁଟେ । ଜିଭ ଅଗରେ ଅଛି ।

ଭୋଳି : ମଣିଷ ମୁଣ୍ଡିଆ ।

ଆନନ୍ଦ ଚନ୍ଦ୍ର ପତି

## ଭାଙ୍ଗିପଡୁଥିବା ଭୂମି : ୧୪

ସୁନିଲ : (ଖୁବ୍ ଖୁସି ହୋଇ) ହଁ, ହଁ ମଣିଷମୁଣ୍ଡିଆ । ସେ ଗଛର ଆମ୍ବ ମଣିଷ ମୁଣ୍ଡ ପରି ବଡ଼ ବଡ଼ । ହଁ, ଆଉ ଗୋଟେ ଗଛ ନାଆଁ ମନେ ପଡ଼ିଲା । କଞ୍ଚାଖାଇ । କଞ୍ଚାଖାଇ ଆମ୍ବ ଏତେ ମିଠା ଯେ ସେ ଆମ୍ବ ପାଚିବା ପର୍ଯ୍ୟନ୍ତ ଗଛରେ ରହେନା ।

ଭୋଳି : ସେ କଥା ଏବେ ମନେ ପକାଇ ଲାଭ କ'ଣ ?

ସୁନିଲ : ଗାଆଁଟା ଖାଁ ଖାଁ ଲାଗୁଛି ।

ଭୋଳି : ଗାଆଁରେ କିଛି ଦିନ ରହିବତ ?

ସୁନିଲ : ରହିବାକୁତ ଆସିଛି ।

ଭୋଳି : (କାଶିଲା) ଗାଈଟା ହଜିଚି । ଖୋଜିବାକୁ ଯାଉଚି ।

ସୁନିଲ : ହଉ ଯା ।

(ଭୋଳିର ପ୍ରସ୍ଥାନ)

ଅସୀମା : ଏଇଟା ତାହେଲେ ଆମ ଗାଆଁ ?

ସୁନିଲ : ଗାଆଁଟା ବହୁତ ବଦଳି ଗଲାଣି ।

ଅସୀମା : ଚାଲ ଆମେ ଆମଘରକୁ ଯିବା ।

ସୁନିଲ : ଚାଲ ।

(ଦୁହେଁ ଚାଲୁଚାଲୁ ଅସୀମା ଠିଆ ହୋଇ କ୍ୟାମେରା ଧରିଲା)

ସୁନିଲ : ଠିଆ ହେଲୁ କାହିଁକି ?

ଅସୀମା : ଗାଆଁ ଦାଣ୍ଡର ଗୋଟେ ଫଟୋ ନେବି ।

ସୁନିଲ : ଗୋଟେ କାହିଁକି ? ଯେତେ ଇଛା ସେତେ ନେ ।

ଅସୀମା : (କ୍ୟାମେରା ଧରି ଆଙ୍ଗଲ ଦେଖିଲା) ଦେଖିଲ ଏଇ ଆଙ୍ଗଲରୁ ନେବି ?

ସୁନିଲ : ଠିକ୍ ଅଛି, ନେ ।

(ଅସୀମା ଫଟୋ ଉଠାଇଲା)

ସୁନିଲ : ଏଥର ଚାଲ ।

(ଦୁହେଁ ବ୍ରିଫ୍‌କେଶ ଧରି ଗାଆଁ ଦାଣ୍ଡରେ ଚାଲିଛନ୍ତି । ଅନେକ ଲୋକ ଗାଆଁଦାଣ୍ଡ ଦେଇ ଯିବା ଆସିବା କରୁଛନ୍ତି ଓ ଏ ଦୁଇଜଣଙ୍କୁ ଚାହୁଁଛନ୍ତି ।)

ଅସୀମା : ଆମକୁ କେହି ଚିହ୍ନି ପାରୁନାହାନ୍ତି ।

ସୁନିଲ : ତତେ ଆମ ଗାଆଁଲୋକ ଆଗରୁ ମୋତେ ଦେଖି ନଥିଲେ । ଚିହ୍ନିବେ କେମିତି ?

ଅସୀମା : ମତେ ନଚିହ୍ନିଲେ ନାହିଁ, ତମକୁ କୋଉ ଚିହ୍ନୁଛନ୍ତି ?

ସୁନିଲ : ଦୀର୍ଘ ତିରିଶ ବର୍ଷ ପରେ ଗାଆଁକୁ ଫେରୁଚି, କେମିତି ଚିହ୍ନିବେ ? ତା'ଛଡ଼ା ମୋତେ ମୋଟେ ନଦେଖିଥିବା ଅନେକ ଯୁବକ ଯୁବତୀ ଆଉ ପିଲା ଆମ ଗାଆଁରେ ଅଛନ୍ତି ।

ଅସୀମା : ଗାଆଁତ ଆସି ସରିବାକୁ ବସିଲାଣି, ଆମଘର କାହିଁ ?

ସୁନିଲ : ଏଇ ଶେଷ ମୁଣ୍ଡରେ ତ ଆମ ଘର ଥିଲା ।

ଅସୀମା : ଶେଷଟା କ'ଣ ସବୁଦିନେ ଶେଷ ହେଇ ରହିଥାନ୍ତା ?

ସୁନିଲ : ତା ମାନେ ?

ଅସୀମା : ଏ ତିରିଶ ବର୍ଷ ଭିତରେ ଗାଆଁଟା ନିଶ୍ଚୟ କିଛି ବଢ଼ିଥିବ ।

ସୁନିଲ : ତଥାପି ତୋ କଥା ମୁଁ କିଛି ବୁଝିପାରୁ ନାହିଁ ।

ଅସୀମା : ଏଥିରେ ନ ବୁଝିବାର କ'ଣ ଅଛି ? ତୁମେ ଗାଆଁରେ ଥିଲାବେଳେ ଗାଆଁର ଲୋକସଂଖ୍ୟା ଯେତେ ଥିଲା, ଏବେ ସେତିକିରେ ସୀମିତ ନଥିବ ।

ସୁନିଲ : ହଁ, ଯା ଭିତରେ ଗାଆଁର ଲୋକସଂଖ୍ୟା ଢ଼େର ବଢ଼ିଥିବ ।

ଅସୀମା : ଆଉ ଘର ସଂଖ୍ୟା ?

ସୁନିଲ : ସିଏ ବି ବଢ଼ିଥିବ ।

ଅସୀମା : ଆଉ ଗାଆଁର ଦୈର୍ଘ୍ୟ ?

ସୁନିଲ : ନିଶ୍ଚୟ ବଢ଼ିଥିବ ।

ଅସୀମା : ଗାଆଁର ଲୋକ ସଂଖ୍ୟା, ଘର ସଂଖ୍ୟା, ଓ ଗାଆଁର ଦୈର୍ଘ୍ୟ ଏସବୁ ଯଦି ନିଶ୍ଚୟ ବଢ଼ିଥିବ ତାହେଲେ ଆମ ଘରଟା ପୂର୍ବପରି ଗାଆଁର ଶେଷ ମୁଣ୍ଡରେ କେମିତି ଥିବ ?

ସୁନିଲ : କରେକ୍ଟ । ୟୁ ଆର ହଣ୍ଡ୍ରେଡ୍ ପରସେଣ୍ଟ ରାଇଟ । ଆମ ଘର ପରେ ହୁଏତ ଆଉ କେତେଟା ଘର ତିଆରି ହୋଇଥିବ । ତେଣୁ ଘରଟା ଆଉ ଗାଆଁର ଶେଷ ମୁଣ୍ଡରେ ନଥିବ ।

ଅସୀମା : ଗାଆଁଲୋକ କାହାକୁ ପଚାର, ସିଏ ଚିହ୍ନେଇ ଦେବ ।

ସୁନିଲ : ନା । ମୁଁ ଆମ ଘରଟା ଚିହ୍ନିପାରିବି ନେଇଁ ?

ଅସୀମା : କେମିତି ଚିହ୍ନୁଚ ଚିହ୍ନ । ମତେ ଭାରି ଟାଏଡ୍ ଲାଗିଲାଣି । (ବ୍ରିଫକେଶଟା ଥୋଇ ତା ଉପରେ ବସି ପଡ଼ିଲା ଅସୀମା)

ସୁନିଲ : ଆମ ଘର ଆଗରେ ଗୋଟେ ନଡିଆଗଛ ଥିଲା । ଦୁଇଟା

ପଥରକୁ ଯୋଡ଼ି ଗୋଟେ ସିମେଣ୍ଟ ଚଟାଣ କରାଯାଇଥିଲା । ସେଇ ଚ଼ଟାଣରେ ଶୀତଦିନ ସକାଳେ ମୁଁ ଖରା ଖାଉଥିଲି, ବହି ଧରି ପଢୁଥିଲି ।

ଅସୀମା : ସେ ଘର ପିଣ୍ଡାକୁ ଅନେଇଲ ? ସିମେଣ୍ଟ ଛାଡି ଯାଇଥିବା ଦୁଇଟା ପଥର ପଡ଼ିଚ଼ି ।

(ଦୁହେଁ ସେ ଘର ପାଖକୁ ଗଲେ ଓ ସୁନିଲ ସେ ପଥର ଦୁଇଟାକୁ ଚିହ୍ନିବାକୁ ଚେ଼ଷ୍ଟାକଲେ)

ସୁନିଲ : ହଁ, ଏଇଟା ଆମ ଘର । ଏଇଠି ଥିଲା ନଡିଆ ଗଛ, ତାକୁ କିଏ ହାଣି ନେଇଛି ।

ଅସୀମା : ଘର ମାଲିକ କେହି ନ ରହିଲେ ସେମିତି ହବ । ଆଚ୍ଛା ତମେ ପରା କହୁଥିଲ, ତୁମର ଚାଳ ଛପର ଘର ବୋଲି । ଏଟାତ ଆଚ୍‌ବେଷ୍ଟ ଛପର ଘର ।

ସୁନିଲ : ଗାଆଁରେ ଅନେକ ଦିନ ନ ରହିଲେ, ସେମିତି ହେବ । ହୁଏତ ଏ ଘରଟାକୁ ଆଉ କିଏ ବ୍ୟବହାର କରୁଛି । ସିଏ ଆଜ୍‌ବେଷ୍ଟ ଛପର କରିଥାଇ ପାରେ ।

(ସୁନିଲ ଏଥର ପିଣ୍ଡା ଉପରକୁ ଚ଼ଢ଼ିଲେ । ଘରର କାନ୍ଥକୁ ଚାହିଁଲେ । କାନ୍ଥର ଠଣାରେ ହାତ ପୂରାଇଲେ)

ଅସୀମା : ଡ଼ାଡି ! ତା ଭିତରେ କାଇଁକି ହାତ ପୂରାଇଚ଼ ?

(ସୁନିଲ ଅସୀମାର କଥା ନଶୁଣି ଠଣାରୁ ଗୋଟିଏ ମଇଳା ବାଟି ଆଣିକି ହାତରେ ଧରି ରୁମାଲ ଦ୍ୱାରା ଘସିମାଜି ପୁରୁଣା ବାଟିକୁ ସଫା କଲେ ।)

ଅସୀମା : ସେଇଟା କ'ଣ ?

ସୁନିଲ : କି ଜିନିଷ, ଚିହ୍ନ ।

(ସୁନିଲଙ୍କ ହାତରୁ ନେଇ ଏପଟ ସେପଟ କରି ଦେଖିଲା ଅସୀମା) ନା ମୁଁ ଚିହ୍ନି ପାରୁନେଇଁ ।

ସୁନିଲ : ଏଇଟା ଗୋଟେ ବାଟି । ପିଲାଦିନେ ଏଇବାଟି ଧରି ଗାଆଁଦାଣ୍ଡରେ ଖେଳୁଥିଲି । ଏ ବାଟିଟା ଏ ପର୍ଯ୍ୟନ୍ତ ଏ ଠଣାରେ ମୋତେ ଅପେକ୍ଷା କରିଛି । ଏଠିକି ଚାହିଁଲୁ ମାଆ !

ଅସୀମା : କାଇଁ କ'ଣ ?

ସୁନିଲ : ଏଠି ଫିକ୍ସ ହେଇଚ଼ି ଖଣ୍ଡେ ତିନି କୋଣିଆ ଭଙ୍ଗା ଦର୍ପଣ କାଚ଼ ।

ଏଇ ଦର୍ପଣରେ ମୁଁ ପିଲାଦିନେ ମୁହଁ ଦେଖୁଥିଲି । (କାନ୍ଥରେ ଲାଗିଥିବା କାଚ଼ରେ ମୁହଁ ଦେଖି ହାତ ଆଙ୍ଗୁଳିରେ ମୁଣ୍ଡବାଳକୁ କୁଣ୍ଡାଇଲେ) ଏଇଟା ନିଶ୍ଚୟ ଆମ ଘର । ହେଇ ଦେଖ୍ କବାଟରେ କଟୁରୀ ଚୋଟ ଲାଗିଛି ।

ଅସୀମା : ସିଏ ପୁଣି କ'ଣ ?

ସୁନିଲ : ମୁଁ ପିଲାଦିନେ ଭାରି ଜିଦ୍‌ଖୋର ଥିଲି । ଅରେ ମାଛ ତରକାରୀ ଖାଇବି ବୋଲି ମୋ ବୋଉ ପାଖରେ ମୁଁ ଅଡ଼ି ଲଗେଇଥିଲି । ବାପା ସେତେବେଳେ ଘରେ ନଥିଲେ । ବୋଉ କହିଲା- ବାପା ଆସନ୍ତୁ, ମାଛ ଆଣିବେ, ମୁଁ ତରକାରୀ ରାନ୍ଧିଦେବି ।

ଅସୀମା : ସେଇଠୁ କ'ଣ ହେଲା ?

ସୁନିଲ : ମୁଁ କିନ୍ତୁ ଏକା ଜିଦ୍ ଧରିଲି- ନା, ତୁ ଏବେ ମାଛ ତରକାରୀ ଦେ । ବୋଉ ମୋତେ ଅନେକ ବୁଝାଇଲା, କିନ୍ତୁ ମୁଁ.....

ଅସୀମା : ତମେ ବୁଝିଲ ନାହିଁ ।

ସୁନିଲ : ବୋଉ ରାଗିଯାଇ ମୋ ଗାଲକୁ ଗୋଟେ ଚାପୁଡ଼ା ମାରିଲା । ମୁଁ ରାଗରେ କଟୁରୀ ଧରି ବୋଉ ପଛେ ପଛେ ଗୋଡ଼େଇଲି । ସିଏ ଘର ଭିତରେ ପଶିଯାଇ ଭିତରୁ କବାଟ କିଳି ଦେଲା । ମୁଁ କବାଟକୁ ଚୋଟ ଉପରେ ଚୋଟ ପକାଇଲି । ସେଇ କଟୁରୀର ଚୋଟ ଏଇ କବାଟରେ ଅଛି ।

ଅସୀମା : ଏବେବି ତ ଘରଟା ଭିତରୁ ବନ୍ଦ ଅଛି । ଘର ଭିତରେ କିଏ ଅଛି ନିଶ୍ଚୟ ।

ସୁନିଲ୍ : ଆମର ତ ଆଉ କେହି ଏଠି ନାହାଁନ୍ତି । କିଏ ଆଉ ରହିଲା ?

ଅସୀମା : କବାଟ ନକ୍ କର, ବଳେ ଜଣା ପଡ଼ିବ ।

(ସୁନିଲ କବାଟ ବାଡ଼େଇଲେ । ଘରର କବାଟ ଖୋଲି ବାହାରକୁ ଆସିଲା ଜଣେ ମଧ ବୟସର ମଣିଷ ।)

ଶଙ୍କର : କ'ଣ ଆଜ୍ଞା ? (ସୁନିଲ ଅସୀମାଙ୍କୁ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁ) ଦେଶୀ ଚ଼ଲିବ ? ମହୁଲି ନା ତାଉଳି ?

ସୁନିଲ : ମହୁଲି, ତାଉଳି କ'ଣ ?

ଶଙ୍କର : ତମେ ଜାଣିନା ?ମହୁଲି ଆଉ ତାଉଳି ଦେଶୀ ମାଲ୍ ।

ସୁନିଲ : ମାଲ୍ ?

ଶଙ୍କର : ମାନେ କ'ଣ ଜାଣିନା ? ମଦ ।

ସୁନିଲ : ଏଠି ତାହେଲେ କ'ଣ ମଦ ମିଳେ ?

ଶଙ୍କର : ଏମିତି ଆଶ୍ଚର୍ଯ୍ୟ ହେଉଛ କ'ଣ ? ମଦଦୋକାନରେ ମଦ ନମିଳି ଆଉ କ'ଣ ମିଳନ୍ତା ? ମହୁ ନା କ୍ଷୀର ?

ସୁନିଲ : ମଦଦୋକାନ ?

ଶଙ୍କର : (ଚଡ଼ା ଗଳାରେ) ଥରେ ତ କହିଲି, ଆଉ କେତେ ଥର କହିବି ? ତୁମକୁ କ'ଣ ଭଲ ଭାବରେ ଶୁଣାଯାଉ ନାହିଁ ? କିଛି ତ ନବାଉ ନାହିଁ, ଏଠି ଏତେ ଫଟରେଇ ହଉଚ କ'ଣ ? (ଧଡ଼କରି ଭିତରୁ କବାଟ ବନ୍ଦ କରି ଦେଲା ଶଙ୍କର । ପୁଣି କବାଟ ବାଡ଼େଇଲେ ସୁନିଲ୍, କିନ୍ତୁ ସିଏ ଆଉ କବାଟ ଫିଟାଇଲା ନାହିଁ ।)

ଅସୀମା : ଏଇ, ଆମ ଆଡ଼କୁ କିଏ ଜଣେ ଆସୁଛି, ତାକୁ ପଚାର ଆମ ଘରଟାରେ କିଏ ରହୁଛି । (ଏଇ ସମୟରେ ସାରଙ୍ଗ ଆସିଲା ।)

ସୁନିଲ : ଆଜ୍ଞା ବାବୁ ! ଏଇଟା କ'ଣ ଗୋଟେ ମଦଦୋକାନ ।

ସାରଙ୍ଗ : ହଁ ।

ସୁନିଲ : ଏଟା କାହା ଦୋକାନ ?

ସାରଙ୍ଗ : ଆଉ କିଏ କରିବ ? ଯାହାଘର ସିଏ ମଦଦୋକାନ କରିଛି ।

ସୁନିଲ : ଏ ଘର କାହାର ?

ସାରଙ୍ଗ : ଏଇ ଗାଆଁର ମହେନ୍ଦ୍ର ବିଶ୍ୱାଳର ।

ସୁନିଲ : ଏଇଟା କ'ଣ ମହେନ୍ଦ୍ର ବିଶ୍ୱାଳର ନିଜ ଘର ?

ସାରଙ୍ଗ : ନା । ମୁଁ ଶୁଣିଛି ଏଇଟା କୁଆଡ଼େ ଆମ ଗାଆଁର ଅନିଲ୍ ମହାପାତ୍ରଙ୍କ ଘର ଥିଲା । ତାଙ୍କର ଗୋଟିଏ ବୋଲି ପୁଅ ସୁନିଲ, ସିଏ ଆମେରିକାରେ ଅଛି । ତାଙ୍କର ଆଉ ଏଠି କେହି ନାହାଁନ୍ତି । ଅନିଲ ମହାପାତ୍ରଠୁ ମହେନ୍ଦ୍ର ବିଶ୍ୱାଳ ଏ ଘର କିଣିଛି । ତାଙ୍କ ଜମି, ବାଡ଼ି, ପୋଖରୀ ସବୁ କିଣିଛି । ଅନିଲ ମହାପାତ୍ରଙ୍କର ଅନେକ ଦିନରୁ କାଳ ହେଇଗଲାଣି ।

ସୁନିଲ : ମୁଁ ସେଇ ଅନିଲ ମହାପାତ୍ରଙ୍କ ପୁଅ ସୁନିଲ ମହାପାତ୍ର । ଆଉ ଇଏ ମୋ ଝିଅ ଅସୀମା ।

ସାରଙ୍ଗ : (ଅପ୍ରତିଭ ହୋଇ) ମୁଁ ଆପଣଙ୍କୁ ଚିହ୍ନି ନଥିଲି ।

ସୁନିଲ : ମୋତେ ତମେ ନ ଚିହ୍ନିବା ସ୍ୱାଭାବିକ । ମୁଁ ତିରିଶ ବର୍ଷ ଆମେରିକାରେ ରହିବା ପରେ ଆଜି ଗାଆଁକୁ ଫେରୁଛି । ତୁମେ ତ ଅଳ୍ପ ଦିନର ମଣିଷ । ମୁଁ ଆମେରିକା ଯିବା ବେଳକୁ ତମେ ଅତି ସାନପିଲା ହେଇଥିବ । ତମେ ମତେ ଚିହ୍ନିବ କେମିତି ?

ସାରଙ୍ଗ : ମୁଁ ଆପଣଙ୍କୁ କେବେ ଦେଖି ନଥିଲି ତ, ସେଇଥି ପାଇଁ ଚିହ୍ନି ପାରିଲି ନାହିଁ ।

ସୁନିଲ : ମୋ ଜାଣିବାରେ ମୋ ବାପା ମହେନ୍ଦ୍ର ବିଶ୍ୱାଳଙ୍କୁ ଘର, ଜମି, ପୋଖରୀ କିଛି ବିକ୍ରି କରି ନାହାଁନ୍ତି । ସିଏ ଶେଷ ନିଃଶ୍ୱାସ ତ୍ୟାଗ କଲାବେଳେ ମୁଁ ତାଙ୍କ ପାଖରେ ଉପସ୍ଥିତ ଥିଲି । ସେତେବେଳେ ବି ବାପା ମତେ ଏ ବିଷୟରେ କିଛି କହି ନଥିଲେ ।

ସାରଙ୍ଗ : ମହେନ୍ଦ୍ର ବିଶ୍ୱାଳ କିନ୍ତୁ ଆଜି ବି କୋଡ଼ିଏ ବର୍ଷ ହେଲା ସବୁ ଭୋଗଦଖଲ କରୁଛି ।

ଅସୀମା : ଆମ ଘର, ଦ୍ୱାର, ଜମିବାଡ଼ି ସିଏ ଜବର ଦଖଲ କଲେ ବୋଲି କ'ଣ ତାଙ୍କର ହେଇଯିବ ?

ସାରଙ୍ଗ : ଗାଆଁ ଲୋକମାନଙ୍କୁ ମିଛ କହି, ସିଏ ଆପଣଙ୍କ ସମ୍ପତ୍ତି ଦଖଲ କରି ନେଇଛି । ଆପଣ ଯାଇ ନିଜେ ତାକୁ ମୁହାଁମୁହିଁ ପଚାରନ୍ତୁ, ଆପଣଙ୍କର ଯଦି କିଏ ବିକ୍ରି କରି ଥିବେ ତାହେଲେ ସିଏ ବିକ୍ରି ଖର୍ଦ୍ଦି କାଗଜପତ୍ର ଦେଖାଇବ ।

ସୁନିଲ : ମହେନ୍ଦ୍ର ବିଶ୍ୱାଳ ପରି ଟାଉଟରେ ପକ୍ଷେ ମିଛ କାଗଜପତ୍ର କରିଦେବା କିଛି ବିଚିତ୍ର ନୁହେଁ ।

ଅସୀମା : ସିଏ ତାହେଲେ କ'ଣ ଜମିବାଡ଼ି ଛାଡ଼ିବେ ନାହିଁ ? ଏ ଲୋକଗୁଡ଼ାକ କି ଡେଞ୍ଜରସ୍ !

ସାରଙ୍ଗ : ମହେନ୍ଦ୍ର ବିଶ୍ୱାଳ ରାଜନୀତି କରୁଚି । ପାହାଡ଼କୁ ପଥର ଭଙ୍ଗା କାମରେ ଗାଆଁର ଅନେକ ଲୋକଙ୍କୁ ଲଗେଇଚି, ଗାଆଁରେ ମଦଦୋକାନ ଆଉ ଲୁଗା ଦୋକାନ କରିଚି, ବ୍ଲକରେ କଣ୍ଟ୍ରାକ୍ଟରୀ କରୁଚି । କୋର୍ଟ, କଚେରୀ, ଥାନା, ମନ୍ତ୍ରୀ ଅଫିସ ସବୁଠି ତାର ହାତ ଅଛି । ତାର ଚାରିଆଡ଼େ ଦାଉ । ଏ ପାଞ୍ଚ ଖଣ୍ଡ ଗାଆଁର ଲୋକଙ୍କୁ ସିଏ ଛେଳି କରି ରଖିଛି । ନାକ ଧରିଲେ ମେଁ, କାନ ଧରିଲେ ମେଁ । ତା ମୁହଁରେ କଥା

କହିବାକୁ ଏ ଗାଆଁରେ କିଏ ଅଛି ?

ସୁଜିତ : ତାହେଲେ ଆଉ କ'ଣ କିଛି ଉପାୟ ନାହିଁ ?

ସାରଙ୍ଗ : (ଚିନ୍ତାକରି) ହଁ, ଆଉ ଗୋଟେ କାମ କଲେ ହୁଅନ୍ତା ।

ଅସୀମା : କି କାମ କହୁନା ?

ସାରଙ୍ଗ : ଆମ ଏ ଗାଆଁର କ୍ଲବଟୋକାଗୁଡ଼ାକ ଭାରି ତୁରୁମା । ସେମାନେ ଯଦି ମହେନ୍ଦ୍ର ବିଶ୍ୱାଳକୁ କହିବେ ତାହେଲେ କିଛି ହେଇପାରେ । ଆପଣ କ୍ଲବଟୋକାଙ୍କୁ ବୁଝାଇ ପାରିଲେ ହେଲା ।

ସୁଜିତ : ହଉ, ମୁଁ ସେମାନଙ୍କୁ କହିବି । ସେମାନେ ଏବେ କ୍ଲବରେ ଥିବେ ନା ?

ସାରଙ୍ଗ : ସେମାନଙ୍କର କାମ କ'ଣ ଅଛି ? ଚାକିରି, ବାକିରି କିଛି ନାହିଁ, ବେକାର ହେଇ ବୁଲୁଚନ୍ତି । ହରଘଡ଼ି ସେଇ କ୍ଲବରେ ତାଆସ, ଚେସ୍, କ୍ୟାରମ୍, କ୍ରିକେଟ୍, ରେଡ଼ିଓ, ଟିଭି, ନାଚ଼ଗୀତ ଚାଲିଛି ।

ସୁଜିତ : ଆଚ୍ଛା, ତୁମ ନାଆଁ ?

ସାରଙ୍ଗ : ସାରଙ୍ଗ ।

ସୁଜିତ : ବାପାଙ୍କ ନାଆଁ ?

ସାରଙ୍ଗ : ଗୌରହରି ନାୟକ ।

ସୁଜିତ : ତମେ ତାହେଲେ ଗୋଉରାଭାଇଙ୍କ ପୁଅ ? ବାପା ଆଜିକାଲି କେମିତି ଅଛନ୍ତି ?

ସାରଙ୍ଗ : ତାଙ୍କ ଦେହ ଭଲ ନାହିଁ ।

ସୁଜିତ : କ'ଣ ହେଇଚି ?

ସାରଙ୍ଗ : ଦିନରାତି ଖାଲି କାଶୁଛନ୍ତି । ତାଙ୍କୁ ଟିବି ହେଇଯାଇଚି । ଭାରି କଷ୍ଟ ପାଉଚନ୍ତି ।

ସୁଜିତ : ଟିବି ତ ଆଉ ସେତେ ମାରାତ୍ମକ ରୋଗ ହୋଇନାହିଁ । ନିୟମିତ ଚିକିତ୍ସା କଲେ ଭଲ ହୋଇଯିବେ ।

ସାରଙ୍ଗ : ଆମ ଗାଆଁର ପାଣି, ପବନ ଖରାପ ହେଇଯାଇଚି ବାବୁ ? ଏଠି ଖାଲି ଟିବି ଆଉ ଶ୍ୱାସରୋଗ ମାଡ଼ିଯାଇଚି । ଯାହାକୁ ଏ ରୋଗ ଧରୁଚି ତାକୁ ଆଦୌ ଛାଡୁ ନାହିଁ ।

ସୁଜିତ : ଇଏ ତମର ଭୁଲ୍ ଧାରଣା । ଆମ ଗାଆଁର ପାଣି, ପବନ

କାହିଁକି ଖରାପ ହେବ ?

ସାରଙ୍ଗ : ଆମ ଗାଆଁ ପାହାଡ଼ଟାକୁ ଭାଙ୍ଗିକି ମହେନ୍ଦ୍ର ବିଶ୍ୱାଳ ବାହାରକୁ ଚାଲାଣ କରୁଚି । ଗାଆଁ ସାରା ଲୋକ ପଇସା ପାଇବା ଲୋଭରେ ପାହାଡ଼ରୁ ପଥର ଭାଙ୍ଗୁଛନ୍ତି । ଘରକୁ ଆଣି ଚିପ୍‌ସ ବାଡାଉଛନ୍ତି । ପଥରଗୁଣ୍ଡ ଆମ ଗାଆଁର ପବନରେ ଦିନରାତି ଉଡୁଛି । ଆପଣ ଏଠି ଦିନେ ଦୁଇଦିନ ରହିଗଲେ ସବୁ ଜାଣିଯିବେ ।

ସୁନିଲ : ଇଏ ତ ଖୁବ୍ ବିପଦର କଥା ।

ସାରଙ୍ଗ : ମୁଁ ଏକଥା କହିଚି ବୋଲି କାହା ଆଗରେ କହିବେ ନାହିଁ ।

ସୁନିଲ : ନା, କାହାକୁ କହିବି ନାହିଁ । ଆମେ ତେବେ କ୍ଲବକୁ ଯାଉଚୁ ?

ସାରଙ୍ଗ : ମୁଁ ବି ଯାଉଚି ବାପାଙ୍କ ପାଇଁ ଟିକେ ଔଷଧ ଆଣିବି ।(ପ୍ରସ୍ଥାନ)

(ଅସୀମା ବସିଥିବା ବ୍ରିଫ୍‌କେଶ ଉପରୁ ଉଠି ଠିଆ ହେଲା )

ସୁନିଲ : ଚାଲ୍ ଆମେ କ୍ଲବକୁ ଯିବା ।

ଅସୀମା : ଆଜି ରାତିଟା କୋଉଠି ରହିବା ?

ସୁନିଲ : ମୋର ଗାଆଁ ଅଛି, ଘର ଅଛି, କିନ୍ତୁ ସେ ଘର ଉପରେ ମୋର ଅଧିକାର ନାହିଁ ।

ଅସୀମା : ଆଉ ତାହେଲେ ଆମେ କୋଉଠି ରହିବା ?

ସୁନିଲ : ଏବେ ତ ରାତି ହେବାକୁ ଅନେକ ଡ଼େରି ଅଛି, ଏତେ ବେଳୁ ସେ ଚିନ୍ତା କାହିଁକି କରୁଚୁ ? ଆଗେ ଚାଲ୍ କ୍ଲବକୁ ଯିବା ।

ଅସୀମା : ହଉ ଚାଲ ।

(ସୁନିଲ ଓ ଅସୀମା ଦୁହେଁ ବ୍ରିଫ୍‌କେଶ ଧରି ଚାଲିଲେ ।)



# ଦ୍ୱିତୀୟ ଦୃଶ୍ୟ

(ଗାଆଁ କ୍ଲବଘର । ସମୟ ସଂଧ୍ୟା । ହାତରେ ଗୋଟିଏ କ୍ରିକେଟ ବ୍ୟାଟ ଧରି ପ୍ରବେଶ କରିଛି ଆଲୋକ । ପିନ୍ଧିଛି ଧଳା ପ୍ୟାଣ୍ଟ ଓ ଧଳା ବ୍ୟାନିଅନ୍ । ମୁଣ୍ଡରେ ଧଳା କ୍ରିକେଟ ଟୋପି । ଗୋଡରେ ପ୍ୟାଡ ଓ ହାତରେ ଗ୍ଲୋବସ୍ । ପ୍ୟାଭିଲିୟନରୁ କ୍ରିକେଟ୍ ପ୍ଲେୟାର ପଡିଆକୁ ଓହ୍ଲାଇବା ପରି ମଞ୍ଚ ଉପରକୁ ଆସିଛି । କ୍ରିକେଟ କ୍ରିଜ୍‌ରେ ଠିଆହେବା ପରି ଭଙ୍ଗିରେ ଠିଆ ହୋଇ, ଗୋଡ ହାତ ହଲାଇ ବ୍ୟାଟିଂ ପୂର୍ବର ପ୍ରସ୍ତୁତି ପରି ନିଜକୁ ପ୍ରସ୍ତୁତ କରିଛି । ସାଇଡ ସ୍କ୍ରିନ୍‌ଟା ଟିକେ ଘୁଞ୍ଚାଇବା ପାଇଁ ହାତଠାରି ସୂଚନା ଦେଇଚି । ତାପରେ ଗାର୍ଡ ନେଇଛି । ଛକା, ଚଉକା ମାରିବା ଢ଼ଙ୍ଗରେ ବ୍ୟାଟ ବୁଲାଇଛି । ଏକା ଏକା ଏପଟ, ସେପଟ ଧାଇଁ ରନ୍ କରିଛି । ଅର୍ଦ୍ଧ ଶତକ ଓ ଶତକ ହାସଲ କରିବା ପରି ବ୍ୟାଟ ଟେକି ଦର୍ଶକମାନଙ୍କଠୁ ଅଭିବାଦନ ଗ୍ରହଣ କରିଛି । ଏହି ସମୟରେ ହାତରେ ଗୋଟିଏ ଅପେରା ବହି ଧରି ପାର୍ଟ ମୁଖସ୍ଥ କରିବା ସହ ଅଭିନୟ କରି କରି ମଞ୍ଚ ଉପରକୁ ଆସିଛି ଶରତ । ସିଏ କ୍ଲବର ଅନ୍ୟତମ ଅଗ୍ରଣୀ ସଭ୍ୟ । ପିନ୍ଧିଛି ପାଇଜାମା ଓ ପଞ୍ଜାବି ।)

ଶରତ : ସଂଗୀତା ! ତମକୁ ମୁଁ ଖୁବ୍ ଭଲ ପାଏ ସଂଗୀତା । ମୁଁ ଗୋଲାପରେ ଦେଖେ ତୁମ ମୁଖର ଲାବଣ୍ୟ । ମଲ୍ଲୀଫୁଲ ଦେଖିଲେ ମୋର ତୁମ ହସ ମନେ ପଡ଼େ । ଆମ୍ର କୁଞ୍ଜରେ କୋଇଲିର କୁହୁତାନ ଶୁଣିଲେ ତୁମ କଣ୍ଠର ଅମୃତ ଝରିପଡ଼େ ମୋ କାନରେ । ସଂଗୀତା ! ତୁମେ ପୂନେଇଁ ରାତିର ରୂପା ଜହ୍ନ । ସପନରେ ତୁମେ, ଶୟନରେ ତୁମେ, ଜାଗରଣେ ତୁମେ । ଆଖି ମୁଦିଲେ ତୁମେ, ଆଖି ଖୋଲିଲେ ତୁମେ । ସବୁଠାରେ ତୁମେ । ମୋଠି ତୁମେ ଏ କି କପଟ କରୁଛ ସଂଗୀତା ? ତୁମେ ସବୁଠି ଥାଇ କେଉଁଠି ନାହଁ । ମୁଁ ତୁମକୁ ଛୁଇଁ ପାରୁନି କି ଆଲିଙ୍ଗନ କରିପାରୁନି । ମୁଁ ତୁମ ପାଖକୁ ଯେତେ ଲାଗିଲାଗି ଯାଉଛି, ତୁମେ ମୋଠୁ ସେତିକି ଦୂରେଇ

ଯାଉଛ । ନା ସଂଗୀତା ନା । ତୁମେ ମୋତେ ନିଃସଙ୍ଗ କରିଯାଅନା ।
(ଆଲୋକକୁ ସଂଗୀତା ଭାବି ଆଲିଙ୍ଗନ କରିଛି ଶରତ)
ନା, ତୁମେ ଯାଅନା ସଂଗୀତା । ତୁମେ ମୋ ଜୀବନ । ତୁମେ ଗଲେ ମୁଁ ବଂଚି ପାରିବି ନାହିଁ ।

ଆଲୋକ : ଛାଡ଼ । ଛାଡ଼ । ଆରେ ଛାଡ଼ । ଶରତ ଇଏ କ'ଣ ହଉଚି ?

ଶରତ : ନା ସଂଗୀତା ! ମୁଁ ତୁମର କୌଣସି ବାରଣ ମାନିବି ନାହିଁ । ନୋ, ନେଭର ।
(ଶରତ ଆଲୋକକୁ ଜୋର୍‌ରେ ଭିଡ଼ି ଧରି ତାର ମୁହଁରେ ଚୁମ୍ବନ ଦେବାକୁ ଚେଷ୍ଟା କରିଛି । କିନ୍ତୁ ସିଏ ଚୁମ୍ବନ ଦେବା ପୂର୍ବରୁ ଆଲୋକ ନିଜକୁ ଶରତଠୁ ଛଡ଼ାଇ ନେଇଛି)

ଆଲୋକ : ନନ୍‌ସେନ୍ସ; ସବୁ ନଷ୍ଟ କରିଦେଲା । ଯା, ଗଲା ସବୁ ନଷ୍ଟ ହେଇଗଲା । ଆଉ କ'ଣ ସେ କନ୍‌ସେଣ୍ଟ୍ରେସନ୍ ଆସିବ ? ଆଉ ମାତ୍ର ପଚିଶଟା ରନ୍ ହୋଇଥିଲେ ସେଞ୍ଚୁରୀଟା କଂପ୍ଲିଟ ହେଇଆଆନ୍ତା । କିନ୍ତୁ ଏ ବଦମାସ ସବୁ ମାଟି କରିଦେଲା ।

ଶରତ : ତୁମେ ଏମିତି କ'ଣ କହୁଛ ସଂଗୀତା ?

ଆଲୋକ : ସଂଗୀତା ନା ଛତ୍ରୁ ? ତୋ ଜିନ୍ଦେଗିରେ ତୁ କେବେ ଡ୍ରାମା କରିଥିଲୁ ନା କରିବୁ ? ପ୍ରେମିକ ସାଜିଚି, ପ୍ରେମିକ । ନିହାତି ହୋପ୍‌ଲେସ । ଏ କ୍ରିଜ୍‌ରେ ଗୋଟେ ସେଞ୍ଚୁରୀ କରିଥିଲେ କ୍ରିକେଟ ଇତିହାସରେ ମୁଁ ଅମର ହୋଇ ଯାଇଥାନ୍ତି, ଅମର । ମାତ୍ର ପଚିଶଟା ବଲ୍‌ରେ ପଚସ୍ତରି ହେଇଥିଲା । ଆଉ ମାତ୍ର ଦଶ, ବାରଟା ବଲ୍‌ରେ ମୁଁ ପୃଥିବୀର ଫାଷ୍ଟେଷ୍ଟ ସେଞ୍ଚୁରୀ କରିଥାନ୍ତି । ଏଇଟା କେବଳ ମୋର ଗୌରବ ହୋଇନଥାନ୍ତା । ଏ ବିରଳ କୀର୍ତ୍ତି ଅର୍ଜନ କରିଥାନ୍ତା ଏଇ କ୍ଲବର ଜଣେ ସଦସ୍ୟ । ତୁ ୟୁସ୍‌ଲେସ୍ ସବୁ ନଷ୍ଟ କରିଦେଲୁ ।

ଶରତ : ତୁ ତାହେଲେ ମୋ ସଂଗୀତା ନୁହଁ ?
(ଭୁଲ୍‌ରେ ଆଲୋକକୁ ଚୁମ୍ବନ ଦେଇଥିବାରୁ ଥୁ ଥୁ କରି ଛେପ ପକାଇଛି)

ଆଲୋକ : ନା, ମୁଁ ସଂଗୀତା ନୁହଁ, ସଚିନ୍ । ମୁଁ କ୍ରିକେଟ ଜଗତର ବିସ୍ମୟ ସଚିନ । ସଚିନ ତେନ୍ଦୁଲ୍‌କର୍ ।

ଶରତ : ତା ହେଲେ ମୋ ସଂଗୀତା କୁଆଡ଼େ ଗଲା ?

ଆଲୋକ : ମୁଁ ସେ ସଂଗୀତା, ଫଙ୍ଗିତା କିଛି ଜାଣି ନାହିଁ । ତୁ ଗଲୁ, ଉଠ୍, ମୁଁ ବ୍ୟାଟିଂ କଂଟିନିଉ କରେ ।
(ପୁନଶ୍ଚ ବ୍ୟାଟିଙ୍ଗ୍ କରିବା ପାଇଁ ପୋଜ୍ ନେଇ ଠିଆ ହେଲା ।)

ଶରତ : (ଆଲୋକ ପାଖକୁ ଯାଇ ଭଲ ଭାବରେ ଚିହ୍ନିଲା) କିଏ ? ଆଲୋକ କିରେ ?

ଆଲୋକ : ନା, ମୁଁ ଆଲୋକ ନୁହଁ, ସଚ଼ିନ୍ । ଉଠ୍, ମୋ ଆଗରୁ ଉଠ୍, ନହେଲେ ତୋ ମୁଣ୍ଡରେ ବ୍ୟାଟ କି ବଲ୍ ବାଜିଲେ ମୋ ଦୋଷ ଦବୁ ନାହିଁ ।

ଶରତ : ଡ୍ରାମା ଆଉ ମାତ୍ର ଦିନ ପନ୍ଦରଟା ରହିଲା, ତୁ ଏମିତି କ୍ରିକେଟ ପାଗଳ ହେଲେ ଚଳିବ ? ତୋ ପାର୍ଟ ତୁ ଘୋଷିଲୁଣୁ ନା ନାହିଁ ।

ଆଲୋକ : ସେ ପାର୍ଟ, ଫାର୍ଟ ମୁଁ କିଛି ଜାଣି ନେଇଁ । ସନ ସାଇନ୍ କ୍ଲବ ସହିତ ଆଉ ପନ୍ଦର, କୋଡ଼ିଏ ଦିନ ପରେ ମ୍ୟାଚ । ଆମକୁ ରିଗରସ୍ ପ୍ରାକ୍ଟିସ୍ କରିବାକୁ ପଡିବ । ମୁଁ ହେଲି ଆମ ଟିମ୍‌ର ଓପନର । ପ୍ରାକ୍ଟିସ୍ ନକଲେ ସନ୍‌ସାଇନ୍ କ୍ଲବର ଦୁର୍ଦ୍ଦାନ୍ତ ଫାଷ୍ଟବୋଲିଂର ମୁକାବିଲା କିଏ କରିବ ? ତମେ ତ କେହି ଦିନଟାଏ ବି ପ୍ରାକ୍ଟିସ୍ କରୁନା, ମ୍ୟାଚ ଦିନ ଫିଲ୍ଡରେ କ'ଣ କରିବ ?

ଶରତ : ଏଥର ଆମ ଡ୍ରାମା ଡ଼ାଇରେକ୍ଟର କେତେ କଡ଼ା ତୁ ଜାଣିଚୁ ନା ? ସିଏ କହିଛନ୍ତି ଯାହାର ପାର୍ଟ ମୁଖସ୍ଥ ନହୋଇଥିବ ତାକୁ ସମସ୍ତଙ୍କ ଆଗରେ ରିହଲସାଲ ସରିବା ପର୍ଯ୍ୟନ୍ତ ଆଣ୍ଠୁତଳେ ଗୋଡ଼ି ଦେଇ ନିଲ୍‌ଡାଉନ୍ କରାଇ ଦେବେ ।

ଆଲୋକ : ମୁଁ ଡ୍ରାମାରେ ଭାଗ ନେବି ନାହିଁ । କ୍ରିକେଟ୍ ମ୍ୟାଚ ନ ସାରିବା ପର୍ଯ୍ୟନ୍ତ ଡ୍ରାମା ନାଆଁ ମୋ ଆଗରେ କେହି ଧରିବ ନାହିଁ ।

ଶରତ : ମୁଁ ତତେ ଜଣେଇ ଦେଉଛି, ମୁଁ ସେ କ୍ରିକେଟ ମ୍ୟାଚ୍, ଫ୍ୟାଚ୍ କିଛି ଜାଣି ନାହିଁ । ଡ୍ରାମା ନ ସରିବା ପର୍ଯ୍ୟନ୍ତ କ୍ରିକେଟ୍, ଫ୍ରିକେଟ୍ କଥା ମୋ ଆଗରେ କେହି କହିବ ନାହିଁ ।
(ଦୁହେଁ ନିଜ ନିଜ କାମରେ ଲାଗିଲେ । ଆଲୋକ ପୁଣି

କ୍ରିକେଟ ଖେଳରେ ମାତିଲା । ଏକା, ଏକା ରନ୍ କଲା । ଚଉକା ଓ ଛକା ପିଟିଲା । ଖୁସି ହେଲା । ଶରତ ପୂର୍ବପରି ବଡ଼ ପାଟିରେ ପାର୍ଟ ଘୋଷି ଚାଲିଲା ।)

ଶରତ : ସଂଗୀତା ! ତୁମକୁ ମୁଁ ଖୁବ୍ ଭଲ ପାଏ ସଂଗୀତା । ମୁଁ ଗୋଲାପ ଫୁଲରେ ଦେଖେ ତୁମର ମୁଖର ଲାବଣ୍ୟ । ମଲ୍ଲୀଫୁଲ ଦେଖିଲେ ମୋର ତୁମ ହସ ମନେପଡ଼େ । ଆମ୍ରକୁଞ୍ଜରେ କୋଇଲିର କୁହୁତାନ ଶୁଣିଲେ ତୁମ କଣ୍ଠର ଅମୃତ ଝରିପଡ଼େ ମୋ କାନରେ ।

(ଶରତ ଏମିତି ପାର୍ଟ ଘୋଷି ଚାଲିଥିବା ବେଳେ ପ୍ରବେଶ କରିଛି ମଦନ । ପନ୍ଧିଛି ଫୁଲପ୍ୟାଣ୍ଟ ଓ ହାଫ୍ ସ୍ଲୋଭିଙ୍ଗ ଗେଞ୍ଜି । ବହିଟିଏ ଧରି ବଡ଼ ପାଟିରେ ପଢ଼ି ପଢ଼ି ଆସିଛି ।)

ମଦନ : ଖୁବ୍ ପ୍ରଭାତରୁ ଅର୍ଥାତ୍ ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟା ତ୍ୟାଗ କରି ତୁରନ୍ତ ନିତ୍ୟକର୍ମ ସାରିବ । ତାପରେ ଶହେଆଠ ଦଣ୍ଡବୈଠକ ମାରିବ ।

(ବହିଟାକୁ ଥୋଇ ଦେଇ ଦଣ୍ଡବୈଠକ ଆରମ୍ଭ କରିଦେଲା । ଶରତ ଓ ଆଲୋକ ତାଙ୍କ କାମ ବନ୍ଦ କରି ମଦନର ଦଣ୍ଡ ବୈଠକ ଦେଖିଲେ । ମଦନର ଦଣ୍ଡ, ବୈଠକ ବେଳେ ଅର ହେଲା ଦୁହେଁ ମିଳିମିଶି ଗଣିଲେ)

ଶରତ : ପନ୍ଦର ।

ଆଲୋକ : ଷୋହଳ ।

ଶରତ : ସତର ।

ଆଲୋକ : ଅଠର ।

ଶରତ : ଊଣେଇଶ ।

ଆଲୋକ : କୋଡ଼ିଏ ।

ମଦନ : ଏତିକିରେ ମୋ ଜଙ୍ଘମୂଳ କଟ୍‌ମଟ୍ ହୋଇଲାଣି । ଆଉ ପାରିବି ନାହିଁ ।

ଶରତ : ଏତିକିରେ କ'ଣ ଶହେଆଠ ହେଇଗଲା ? ହଁ ଚାଲୁ ! ଏକୋଇଶ ।

ମଦନ : ନାଇଁ, ଆଉ ହବ ନେଇଁ ।

ଆଲୋକ : ନହେଲେ ଆଉ ତୁ ବିଶ୍ୱଶ୍ରୀ ପ୍ରତିଯୋଗିତାରେ କେମିତି ଭାଗ

ନେବୁ ?

ମଦନ : ଆଜି ମୁଁ ଆରମ୍ଭ କରିଛି । ତମେ ଏମିତି ଉଚ୍ଛନ୍ନ କାହିଁକି ହେଉଛ ? ଆଉ ଆଠ ଦିନ ପ୍ରାକ୍ଟିସ୍ କରେ ତାପରେ ଯାଇ ଦେଖିବ ।

ଶରତ : ଖାଲି ବ୍ୟାୟାମ କଲେ ତ ହବ ନାହିଁ । ରୀତିମତ ଭଲ ଖାଦ୍ୟ ଖାଇବାକୁ ପଡ଼ିବ ।

ମଦନ : ସବୁ ଏଇ ବହିରେ ଲେଖା ଅଛି । ଦିନକୁ ଚାରିଟା ଅଣ୍ଡା, ଲିଟରେ ଦୁଧ, ଅଢ଼େଇଶ ମାଛ, କି ମାଂସ, ଚାରିଟା କଦଳୀ, ବୁଇଶ ଅଙ୍କୁର, ଗଜାବୁଟ ।

ଆଲୋକ : ଏତେ ସବୁ ଖାଇଲେ ତ ତୁ ଫୁଟବଲ୍ ପରି ଫୁଲିଯିବୁ । ଆଉ ବିଶ୍ୱଶ୍ରୀ କେମିତି ହେବୁ ? ବହି ଦେଖିକି ଖାଦ୍ୟ ତାଲିକାଟା ଦେଉନା, ଯାହା ମନେ ଥିଲା କହିଲୁ ?

ମଦନ : ତୁ ସେଥିରୁ କ'ଣ ପାଇବୁ ? ମାଇଣ୍ଡ ଇଓର ଓଉନ୍ ବିଜ୍‌ନେସ୍ ।

ଶରତ : ଆରେ ମଦନ ! ତୋ ଛାତି ପକେଟ୍‌ଟା କ'ଣ ଭାରି ଉଚ୍ଚା ଦିଶୁଚି ।

ମଦନ : (ରାଗିଯାଇ) କ'ଣ କହିଲୁ ?

ଶରତ : (ହସିଲା) ତୁ ଖରାପ ଭାବିଲୁକି ?

ମଦନ : ଭାରି ଭଲ କଥାଟେ କହିଲୁ ତ, ଖରାପ କାହିଁକି ଭାବିବି ?

ଆଲୋକ : ତୁ ସବୁ କଥାକୁ ଏମିତି ଖରାପ ଅର୍ଥ କାହିଁକି କରୁଚୁ ?

ଶରତ : ତୋ ଛାତି ପକେଟ୍‌ରେ କ'ଣ ଗୋଟେ ପଶିଚି ସେଥିପାଇଁ ଉଚ୍ଚା ଦିଶୁଚି । ମୁଁ ଖରାପ ଆଉ କ'ଣ କହିଲି ?

ମଦନ : (ହଠାତ୍ ମନେ ପଡ଼ିଗଲା, ହସି ହସି ପକେଟ୍‌ରୁ ଅଡ଼ିଓ କ୍ୟାସେଟ୍‌ଟିଏ ବାହାର କଲା ।) ଆରେ, ମୁଁ ଭୁଲି ଯାଇଚି ।

ଆଲୋକ : କିରେ ସେଟା କ'ଣ ?

ମଦନ : ଗୋଟେ ବଢ଼ିଆ ୱେଷ୍ଟର୍ଣ୍ଣ ମ୍ୟୁଜିକ୍ କ୍ୟାସେଟ୍ ।

ଆଲୋକ : (ମଦନ ହାତରୁ କ୍ୟାସେଟ୍‌କୁ ନେଇ) ଦେଖି ଦେଖି । (କ୍ୟାସେଟ୍‌ଟାକୁ ମଦନଠୁ ନେଇ ନିଜ ପ୍ୟାକେଟ୍‌ରେ ପୂରାଇ ଦେଲା) ଏଟା, ମୋ ପାଖରେ ରହିଲା । ତମେ ସବୁ ଆସ କ୍ରିକେଟ୍ ପ୍ରାକ୍ଟିସ୍ କର । ତାପରେ ଯାଇ କ୍ୟାସେଟ୍ ଲଗାଇବା ।

ଶରତ : ନା, କ୍ୟାସେଟ୍‌ଟା ବର୍ତ୍ତମାନ ଲଗା । ମ୍ୟୁଜିକ୍‌ଟା ଆମ ଡ୍ରାମା ପାଇଁ କିଛି କାମରେ ଆସିବ କି ନାହିଁ ଦେଖିବା । ଡ୍ରାମାରେ ଗୋଟେ ହୋଟେଲ୍ ସିନ୍ ଅଛି । ସେଥିରେ ବ୍ରେକ୍ ଡାନ୍ସର ବ୍ୟବସ୍ଥା କରିବାକୁ ପଡ଼ିବ ।

ମଦନ : ଆରେ ଏଟା ଗୋଟେ ବଢ଼ିଆ ବ୍ରେକ୍‌ଡ୍ୟାନ୍ସର ମିଉଜିକ୍ ।

ଶରତ : ବ୍ରେକ୍‌ଡ୍ୟାନ୍ସ ? ଆଲୋକ ! ଦେଖୁ ଦେ । ପାଞ୍ଚମିନିଟ୍ ଲଗେଇକି ଟିକେ ଶୁଣିବା । ମୁଁ ପ୍ରୋମିଜ୍ କରୁଛି, କ୍ୟାସେଟ୍‌ଟା ଶୁଣିବା ପରେ ଆମେ ସମସ୍ତେ କ୍ରିକେଟ୍ ପ୍ରାକ୍ଟିସ୍ କରିବା ।

ଆଲୋକ : ପ୍ରୋମିଜ୍

(ଶରତ ଓ ଆଲୋକ ଦୁହେଁ ପ୍ରୋମିଜ୍ କରିବା ଠାଣିରେ ହାତ ମିଳାଇଲେ । ସେମାନଙ୍କ ସହିତ ହାତ ମିଳାଇଲା ମଦନ ।)

ଆଲୋକ : ତାହେଲେ ଠିକ୍ ଅଛି ନେ ।

(ଶରତ ଆଲୋକ ହାତରୁ କ୍ୟାସେଟ୍ ନେଇ ବ୍ଲକରେ ଥିବା ଟେପ୍‌ରେକର୍ଡରରେ ଫିଟ୍ କଲା । ବ୍ରେକ୍‌ଡାନ୍ସର ମ୍ୟୁଜିକ୍ ବାଜିଲା । ମ୍ୟୁଜିକର ତାଳେ ତାଳେ ଆଗ ନାଚିଲା ଶରତ, ତାପରେ ମଦନ ଓ ତାପରେ ଆଲୋକ । ନାଚି ନାଚି ସେମାନେ ବେଦମ ହେବା ବେଳକୁ ଆସିଛନ୍ତି ସୁନିଲ ମହାପାତ୍ର ଓ ଅସୀମା ଦେବୀ । ଦୁହେଁ ଦୁଇଟା ବଡ଼ ବଡ଼ ବ୍ରିଫ୍‌କେଶ ଧରିଥିଲେ । ସେମାନେ ପହଞ୍ଚିବା ପରେ ଶରତ, ଆଲୋକ ଓ ମଦନଙ୍କର ନାଚ ବନ୍ଦ ହୋଇଗଲା । କିନ୍ତୁ କ୍ୟାସେଟ୍‌ର ସେଇ ମ୍ୟୁଜିକ ସେମିତି ବାଜୁଥିଲା ।)

ଶରତ : କାହାକୁ ଖୋଜୁଛନ୍ତି ?

ସୁନିଲ : ଆପଣମାନଙ୍କ ସହିତ ମୋର କିଛି କଥାବାର୍ତ୍ତା ଅଛି ।

ଆଲୋକ : (ଟେପ୍ ରେକର୍ଡରଟାକୁ ବନ୍ଦ କରି ଦେଇ) କଥାବାର୍ତ୍ତା, କି କଥାବାର୍ତ୍ତା ?

ସୁନିଲ : ମୁଁ ଖୁବ୍ ଅସୁବିଧାରେ ପଡ଼ିଛି । ଆପଣମାନେ ମୋତେ ସାହାଯ୍ୟ କରିପାରିବେ ?

ମଦନ : ଆପଣ କିଏ ? ଆଉ...

ସୁନିଲ : ମୁଁ ସୁନିଲ ମହାପାତ୍ର ।

ଶରତ : ସୁନିଲ ମହାପାତ୍ର ?

**ସୁନିଲ** : ଏଇ ଗାଆଁରେ ମୋ ଘର ।

**ଆଲୋକ** : ଆମେ ତ କେହି ଆପଣଙ୍କୁ......

**ସୁନିଲ** : ମୁଁ ଅନିଲ୍ ମହାପାତ୍ରଙ୍କ ପୁଅ । ଦୀର୍ଘ ତିରିଶ ବର୍ଷକାଳ ଆମେରିକାରେ ଥିଲି ଆଜି ଗାଆଁକୁ ଫେରିଚି । ଇଏ ମୋ ଝିଅ ଅସୀମା ।

**ମଦନ** : (ସପଖଣ୍ଡେ ବିଛେଇ ଦେଲା ) ଆସନ୍ତୁ ଆଜ୍ଞା, ଏଇଠି ବସନ୍ତୁ ।

(ସୁନିଲ ଓ ଅସୀମା ବ୍ରିଫ୍‌କେଶ ଦୁଇଟି ତଳେ ଥୋଇ କ୍ଲବ ବାରଣ୍ଡାରେ ପଡ଼ିଥିବା ସପ ଉପରେ ବସିଲେ)

**ଶରତ** : କ'ଣ କହିବେ ବୋଲି କହୁଥିଲେ କୁହନ୍ତୁ । (ସୁନିଲ ଓ ଅସୀମା ପରସ୍ପରଙ୍କ ମୁହଁକୁ ଚାହିଁଲେ । କଥାଟା ପ୍ରକାଶ କରିବା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ଦୁହେଁ କିଛିଟା ଭୟଭୀତ ।)

**ମଦନ** : ଯାହା କହିବାର ଅଛି କୁହନ୍ତୁ । ଏଠି ଆଉ କେହି ନାହିଁ ।

**ଶରତ** : ଆମ ପାଖକୁ ଆସିଛନ୍ତି ଯେତେବେଳେ ଆଉ ଭୟ କରିବାର କିଛି ନାହିଁ । ଯାହା କହିବାର ଅଛି କୁହନ୍ତୁ ।

**ସୁନିଲ** : ତୁମେ ସବୁ ଅଳ୍ପ ବୟସର ମଣିଷ । ମୁଁ ହୁଏତ ଆମେରିକା ଯିବାପରେ ତୁମମାନଙ୍କର ଜନମ । ତେଣୁ ମତେ କେହି ଚିହ୍ନି ପାରୁନା ।

**ଆଲୋକ** : ଆପଣ ତ କହୁଛନ୍ତି, ଆପଣ ଆମ ଗାଆଁ ଅନିଲ ମହାପାତ୍ରଙ୍କ ପୁଅ । ଆଉ ଚିହ୍ନିବାରେ ଅସୁବିଧା କ'ଣ ? ଅବଶ୍ୟ ଆମେ ଆପଣଙ୍କ ବାପାଙ୍କୁ ଦେଖି ନ ଥିଲୁ କି ଆପଣଙ୍କୁ ଦେଖି ନଥିଲୁ ।

**ମଦନ** : କିନ୍ତୁ ଆମେ ଆଗରୁ ଆପଣଙ୍କ ବିଷୟରେ ଗାଆଁ ଲୋକଙ୍କଠୁ ଶୁଣିଥିଲୁ ?

**ସୁନିଲ** : ମୋ ଘର, ଦ୍ୱାର, ଜମିବାଡ଼ି ସବୁ ମହେନ୍ଦ୍ର ବିଶ୍ୱାଳ ଅଧିକାର କରି ବସିଛି ? ମୋ ଘରଟାକୁ ସିଏ ମଦଭାଟି କରିଚି । ମୋର ନିଜ ଗାଆଁରେ ମୁଣ୍ଡଗୁଂଜିବାକୁ ସ୍ଥାନ ନାହିଁ ।

**ଶରତ** : ସେଥିପାଇଁ ଚିନ୍ତା ନାହିଁ । ଆପଣ ଏ କ୍ଲବରେ ରୁହନ୍ତୁ ।

**ମଦନ** : ମାସେ, ଦୁଇମାସ, ଛମାସ, ଯେତେଦିନ ଇଚ୍ଛା ସେତେ ଦିନ ରୁହନ୍ତୁ ।

ଆଲୋକ : ଆପଣ ପୁଣି ଆମେରିକା ଫେରିଯିବା ପର୍ଯ୍ୟନ୍ତ ଏଇଠି କ୍ଳବରେ ରହିଲେ ଆମର କିଛି ଆପତ୍ତି ନାହିଁ ।

ସୁନିଲ : ମୁଁ କିନ୍ତୁ ଆଉ ଆମେରିକାକୁ ଫେରିବି ନାହିଁ ।

ଅସୀମା : ଆମେ ସବୁଦିନ ପାଇଁ ଆମେରିକା ଛାଡ଼ି ଗାଆଁରେ ରହିବାକୁ ଆସିଛୁ ।

ଆଲୋକ : ଆପଣ ଆମ ଏ କ୍ଳବରେ ସବୁଦିନ ରହିଲେ ବି ଆମର କିଛି ଆପତ୍ତି ନାହିଁ ।

(ଆଲୋକ ଚାହିଁଲା ଶରତ ମୁହଁକୁ ଓ ମଦନ ମୁହଁକୁ)

ମଦନ : ନା ।

ଶରତ : ନା, କିଛି ଆପତ୍ତି ନାହିଁ । ବରଂ ଆମେ ଖୁସି ହେବୁ ।

ସୁନିଲ : କିନ୍ତୁ.....

ଆଲୋକ : କିନ୍ତୁ କ'ଣ ? ଭଡ଼ା, ଫଡ଼ା କଥା କହୁଛନ୍ତି କି ?

ଶରତ : ସେ ସବୁ କିଛି ଦେବାକୁ ପଡ଼ିବ ନାହିଁ ।

ସୁନିଲ : ନା, ମୁଁ ସେକଥା କହୁନାହିଁ ।

ମଦନ : ଆଉ ତେବେ କୋଉ କଥା କହୁଛନ୍ତି ?

ସୁନିଲ : ଗାଆଁରେ ମୋ ନିଜ ଘର ଥାଉଁ ଥାଉଁ ମୁଁ ସବୁଦିନ କ୍ଳବରେ ରହିବା ଠିକ୍ ହେବ ନାହିଁ । ତାଛଡ଼ା, ମୁଁ ଏକା ନୁହଁ । ମୋ ସାଙ୍ଗରେ ମୋ ଝିଅ ଅଛି । ମୁଁ କହୁଥିଲି....

ଆଲୋକ : ଯାହା କହିବାକୁ ଚାହୁଁଛନ୍ତି କୁହନ୍ତୁ ।

ଅସୀମା : ଏ ମହେନ୍ଦ୍ର ବିଶ୍ୱାଳ କ'ଣ ଆମ ଘର, ଦ୍ୱାର, ଜମିବାଡ଼ି ସବୁଦିନ ଏମିତି ମାଡିବସିଥିବ ?

ସୁନିଲ : ଆଉ ମୁଁ ତାକୁ ସବୁଦିନ ପାଇଁ ମୋର ସମସ୍ତ ସଂପତ୍ତି ଛାଡ଼ି ଚୁପ୍ ରହିବି ?

ଶରତ : ସିଏ କ'ଣ ଆପଣଙ୍କଠାରୁ ସେସବୁ ଟଙ୍କା ଦେଇ କିଣି ନେଇଁ ?

ସୁନିଲ : ନା ।

ମଦନ : ଆମ ଗାଆଁବାଲା ସମସ୍ତେ ଜାଣନ୍ତି ଆପଣ, କି ଆପଣଙ୍କ ବାପା କାହାଠାରୁ ସିଏ ଏ ସବୁ ସଂପତ୍ତି କିଣିଛି ।

ସୁନିଲ : ଏଇଟା ନିହାତି ମିଛ କଥା । ଆମେ ଏଠି କେହି ନଥିବାର ସୁଯୋଗ ନେଇ ସିଏ ଆମର ସବୁ ସଂପତ୍ତି ମାଡ଼ିବସିଚି । ଆଉ

ଏମିତି ଗୋଟେ ମନଗଢ଼ା କଥା କହି ଗାଆଁ ଲୋକମାନଙ୍କୁ ଚୁପ୍ କରାଇ ଦେଇଛି ।

ଆଲୋକ : ମହେନ୍ଦ୍ର ବିଶ୍ୱାଳ ଏସବୁ କାମରେ ଖୁବ୍ ଧୁରନ୍ଧର ।

ଶରତ : ଆପଣଙ୍କ କଥା ଯଦି ସତ ହୋଇଥାଏ, ଆଜି ଆମେ ତାଠୁ ସମସ୍ତ ସଂପତ୍ତି ଛଡ଼ାଇ ଆଣିବୁ ।

ମଦନ : ଆପଣ ଏଠି ନିଶ୍ଚିନ୍ତରେ ରୁହନ୍ତୁ, ଆମେ ସଙ୍ଗେ ସଙ୍ଗେ ଯାଇ ସେ କଥା ମହେନ୍ଦ୍ର ବିଶ୍ୱାଳଙ୍କୁ ପଚାରୁଛୁ । ଆସ ଶରତ । ଆ ଆଲୋକ !

ଶରତ }
ଆଲୋକ } : ଚାଲ୍ ।

ମଦନ : ଆମେ ଫେରୁ ଫେରୁ ଡେରି ହୋଇପାରେ । ଆମ ଏଇ ଛକରେ ଥିବା ରତନା ଦୋକାନରେ ଆପଣ ଦୁହିଁଙ୍କର ରାତି ଭୋଜନ ପାଇଁ ଦୁଇଟା ମିଲ୍ ବରାଦ କରିଦେଇ ଯାଉଛୁ । ନେଇ ଆସି ଖାଇଦେବେ । ଆମକୁ ଅପେକ୍ଷା କରିବେ ନାହିଁ ।

ସୁନିଲ : ହଁ, ମୁଁ ନେଇ ଆସିବି ।

ଆଲୋକ : ରୁଟି ଡାଲମା ହେଲେ ଚଳିବ ତ ?

ସୁନିଲ : ଯାହା ହେଲେ ଚଳିବ । ତୁମେ ସବୁ ମହେନ୍ଦ୍ର ବିଶ୍ୱାଳ ସାଙ୍ଗରେ ଝଗଡ଼ା କରିବ ନେଇଁ । ତାକୁ ବୁଝେଇ ସୁଝେଇ କହିବ ।

ଶରତ : ତାକୁ କେମିତି ଜବତ କରିବାକୁ ହେବ ସେ କଥା.....
(ଶରତ, ମଦନ ଓ ଆଲୋକ ପରସ୍ପରଙ୍କ ମୁହଁକୁ ଚାହିଁଲେ)

ତିନି ଜଣଯାକ }
ଏକ ସ୍ୱରରେ } : ଆମକୁ ବେଶ ଜଣା ।

(ଶରତ, ମଦନ ଓ ଆଲୋକ ବାହାରକୁ ଚାଲିଗଲେ । ସୁନିଲ ଓ ଅସୀମା ବ୍ରିଫକେଶ ଖୋଲି ରାତି ବ୍ୟବହାର ପାଇଁ ପୋଷାକ ପତ୍ର ବାହାର କରୁଥିଲେ । ମଞ୍ଚ ଅନ୍ଧକାର ହେଲା )



# ତୃତୀୟ ଦୃଶ୍ୟ

(ସୁନିଲ ମହାପାତ୍ରଙ୍କ ଘର, ଯାହା ବର୍ତ୍ତମାନ ମହେନ୍ଦ୍ର ବିଶ୍ୱାଳଙ୍କର ମଦଭାଟିରେ ପରିଣତ ହୋଇଛି । ସମୟ ସଂଧ୍ୟା । ମହେନ୍ଦ୍ର ବିଶ୍ୱାଳ ମଦଭାଟିର ବାରଣ୍ଡାରେ ବସି ଗୋଟିଏ ବଡ଼ଖାତା ଧରି କ'ଣ ହିସାବ କରୁଛି । ତା ପାଖରେ ଠିଆ ହୋଇଛି ଶଙ୍କର ।

ମହେନ୍ଦ୍ର : (ହିସାବ ଖାତାକୁ ଚାହିଁ) ଆଜି କେତ ଟ୍ରିପ୍ ଚିପ୍‌ସ ଚାଲାଣ ହେଲା ?

ଶଙ୍କର : ଦଶ ଟ୍ରିପ୍ ଆଜ୍ଞା ।

ମହେନ୍ଦ୍ର : ଦିନକୁ ପଚିଶ ଟ୍ରିପ୍ ଆମର ଟାରଗେଟ୍, ତା ସ୍ଥାନରେ ଜମା ଦଶ ଟ୍ରିପ୍, ତୁ କ'ଣ କରୁଥିଲୁ ?

ଶଙ୍କର : ମୋର କିଛି ଦୋଷ ନାହିଁ ଆଜ୍ଞା । ଚିପ୍‌ସ ବାଡ଼େଇବା ପାଇଁ ଆଉ ଟ୍ରକ୍‌ରେ ଲୋଡ଼ କରିବା ପାଇଁ ଲୋକ ମିଳୁ ନାହାନ୍ତି ।

ମହେନ୍ଦ୍ର : (ଚିତ୍କାର କରି) କ'ଣ କହିଲୁ ? ଲୋକ ମିଳୁ ନାହାନ୍ତି ? ମୁଁ ଏ କଥା ଆଦୌ ବିଶ୍ୱାସ କରିବି ନେଇଁ । ଆମ ଗାଆଁରେ କ'ଣ ଲୋକ ନାହାନ୍ତି ?

ଶଙ୍କର : ଲୋକମାନେ ଏକାମ କରିବାକୁ ମଙ୍ଗୁ ନାହାଁନ୍ତି ।

ମହେନ୍ଦ୍ର : କାହିଁକି ? କ'ଣ ମଜୁରି କମ୍ ହେଉଛି ? ତାହେଲେ ଦିନକୁ ଆଉ ଟଙ୍କାଏ ଲେଖା ବଢ଼ାଇ ଦେ ।

ଶଙ୍କର : ସେମାନେ କୁହା କୁହି ହେଉଚନ୍ତି....

ମହେନ୍ଦ୍ର : କ'ଣ କୁହାକୁହି ହେଉଛନ୍ତି ?

ଶଙ୍କର : ଯିଏ ପଥର ବାଡ଼ାଉଚି ତା ନାକରେ ପଥରଗୁଣ୍ଡ ପଶି ତାକୁ ଟିବି ନହେଲେ ଶ୍ୱାସରୋଗ ଧରୁଚି ।

ମହେନ୍ଦ୍ର : ଏ ଶଳା ଗାଆଁ ଲୋକଗୁଡ଼ାକ ଗୋଟେ ଗୋଟେ ବଡ଼ ଡାକ୍ତର । ତାଙ୍କର ମୁଣ୍ଡରେ ଏ ବାଜେ କଥା କିଏ ଭର୍ତ୍ତି କଲା ? ଇଏ ଆମ ଗାଁ କ୍ଲବ ଟୋକାଙ୍କ କାମ ହେଇଥିବ ।

ଶଙ୍କର : ନାଇଁ ଆଜ୍ଞା ! ଏଇ କିଛି ଦିନ ତଳେ ଆମ ଗାଆଁକୁ ଡାକ୍ତର

ଆସିଥିଲା । ସିଏ କ'ଣ ଗୋଉରା ନାୟକକୁ ଦେଖିଲା, ତାକୁ ଟିବି ହେଇଚି ବୋଲି କହିଲା ।

ମହେନ୍ଦ୍ର : ଗୋଉରା ନାୟକ ବୁଢ଼ା ହେଲା, ତାକୁ ଟିବି ହେଲା କ'ଣ ନିହାଲ ହେଇଗଲା ।

ଶଙ୍କର : ସିଏ ଆମ ଗାଆଁର ଆଉ କେତେ ଲୋକଙ୍କୁ ଦେଖିଲା ।

ମହେନ୍ଦ୍ର : କ'ଣ କହିଲା ?

ଶଙ୍କର : କହିଲା- ଏ ଗାଆଁର ଅଧିକାଂଶ ଲୋକଙ୍କୁ ଟିବି, ନହେଲେ ଶ୍ୱାସ ହେଇଚି ।

ମହେନ୍ଦ୍ର : କୋଉ ଗାଆଁରେ ରୋଗ ନାହିଁ ? ହଁ, ଡାକ୍ତର ଆଉ କ'ଣ କହିଲା ?

ଶଙ୍କର : ଡାକ୍ତର କହିଲା, ଏଠି ଦିନ ରାତି ପାହାଡ଼ରେ ପଥର ଭଙ୍ଗା ଚାଲିଚି । ଘରେ ଘରେ ସ୍ତ୍ରୀ, ପୁରୁଷ, ପିଲା, ବୁଢ଼ା ସମସ୍ତେ ପଥର ବାଡ଼େଇ ଗୁଣ୍ଡ କରୁଚନ୍ତି । ଦିନ, ରାତି ଟ୍ରକ ଚାଲିଛି । ପବନରେ ପଥର ଗୁଣ୍ଡ, ଧୂଳି, ଧୂଆଁ ଭର୍ତ୍ତି ହେଇଚି । ଗାଆଁରେ କି ପାଖ ଆଖରେ ଗୋଟିଏ ହେଲେ ଗଛ ନାହିଁ । ଏ ଅଞ୍ଚଳର ପବନ ଖରାପ ହେଇଯାଇଚି । ସେଇଥିପାଇଁ ଲୋକଙ୍କୁ ଟିବି ଆଉ ଶ୍ୱାସ ରୋଗ ହଉଚି ।

ମହେନ୍ଦ୍ର : (ଚିତ୍କାର କଲା) ଶଙ୍କର !

ଶଙ୍କର : ଆଜ୍ଞା !

ମହେନ୍ଦ୍ର : ପାଟି ବନ୍ଦ କର ।

ଶଙ୍କର : (ପାଟିରେ ହାତ ଦେଇ ପାଟି ବନ୍ଦକଲା ।) ବନ୍ଦ କଲି ।

ମହେନ୍ଦ୍ର : (ରାଗିଯାଇ) ଚୁପ୍ !

ଶଙ୍କର : ଚୁପ୍ ହେଲି ଆଜ୍ଞା ।

ମହେନ୍ଦ୍ର : ତୋ ପାଟି ନୁହଁ ।

ଶଙ୍କର : ଆଉ କାହାର ?

ମହେନ୍ଦ୍ର : ସେଇ ହାରାମଜାଦା ଡାକ୍ତରର ପାଟି ବନ୍ଦ କରିଦେ ।

ଶଙ୍କର : ଆଜ୍ଞା ।

ମହେନ୍ଦ୍ର : ତା ପାଟିରେ ବଡ଼ ଧରଣର ଟଙ୍କା ବିଡ଼ାଏ ଗିଳେଇ ଦେ । ତା ପାଟି ଆଉ ଖୋଲିବ ନାହିଁ ।

ଶଙ୍କର : କ୍ଲବ ଟୋକାମାନେ ମଧ୍ୟ ଗଣ୍ଡଗୋଳ କରିପାରନ୍ତି ।

ମହେନ୍ଦ୍ର : ମୁଁ ସେମାନଙ୍କ କଥା ବୁଝିବି । ହଁ, ଆଉ ଗୋଟେ କଥା ?

ଶଙ୍କର : ପୁଣି କି କଥା ?

ମହେନ୍ଦ୍ର : ଗାଆଁର ଆଉ ଯେଉଁମାନେ ଟିକେ କୁହାଳିଆ ସେମାନଙ୍କ ମୁହଁ ବନ୍ଦ କରିବା ପାଇଁ ପ୍ରତିଦିନ ଦେଶୀମଦକୁ ମନ୍ଦେ ମନ୍ଦେ ଢାଳିବାର ବ୍ୟବସ୍ଥା କର । ସେମାନେ ଯେମିତି ଏଥିରେ ପାଟି ଫିଟେଇ ନ ପାରନ୍ତି ।

ଶଙ୍କର : ଆଜ୍ଞା ।

(ଏଇ ସମୟରେ ଆଲୋକ, ଶରତ ଓ ମଦନ ପହଞ୍ଚିଲେ)

ମହେନ୍ଦ୍ର : କିରେ ଆଲୋକ । ତମେ ସବୁ ଏଠି କାଇଁ କି ?

ଆଲୋକ : ଆମେ ତମ ଘରକୁ ଯାଇଥିଲୁ, ସେଠୁ ଖବର ପାଇଲୁ ଯେ ତମେ ଏଠି ଅଛ ।

ମହେନ୍ଦ୍ର : ଆରେ ସେତେ ଦୂରରେ କ'ଣ ଠିଆ ହେଲ ? ଆସ, ଏଠିକି ଆସ । (ଶରତ, ଆଲୋକ ଓ ମଦନ ତାଙ୍କ ପାଖକୁ ଗଲେ ।) କିରେ ଶଙ୍କର ଠିଆ ହେଲୁ କ'ଣ, ଚଉକି ତିନିଟା ଆଣ । (ଶଙ୍କର ଘର ଭିତରକୁ ଗଲା ଏବଂ ତିନିଟା ଚଉକି ଆଣିକି ପକାଇଲା ।)

ମହେନ୍ଦ୍ର : କ'ଣ କେମିତି ଆସିଲ ? ତମ କ୍ଲବ ଖବର କ'ଣ ? ଡ୍ରାମା କରୁଚତ ?

ଶରତ : ହଁ ।

ମହେନ୍ଦ୍ର : ବସ, ବସ ! (ତିନିଜଣ ଯାକ ଚେୟାରରେ ବସିଲେ) ଟଙ୍କା ପଇସା ଯୋଗାଡ ହେଲାଣି ?

ଆଲୋକ : ଆମେ କିନ୍ତୁ ଆଉ ଗୋଟେ କାମରେ ଆସିଥିଲୁ ।

ମହେନ୍ଦ୍ର : ଶଙ୍କର ତୁ କାହିଁକି ଠିଆ ହେଲୁ ? ଯା ପିଲାମାନଙ୍କ ପାଇଁ ଚା ଆଣ । (ଶଙ୍କରର ପ୍ରସ୍ଥାନ)
ହଁ, କ'ଣ କହିବାର ଅଛି ଏଥର କୁହ ?

ଆଲୋକ : ନାଇଁ.... ଏଇ ସୁନିଲବାବୁଙ୍କ କଥା ଆମେ କହିବାକୁ ଆସିଥିଲୁ ।

ମହେନ୍ଦ୍ର : (ଚମକି ପଡ଼ି) କୋଉ ସୁନିଲ ?

ମଦନ : ଆମ ଗାଆଁ ଅନିଲ ମହାପାତ୍ରଙ୍କ ପୁଅ, ଯିଏ ଆମେରିକାରେ ଥିଲେ ।

ମହେନ୍ଦ୍ର : ଓଃ... ସେ ସୁନିଲ କଥା କହୁଛ ? (କୃତ୍ରିମ ହସ ହସି) ବୁଝିଲି, ବୁଝିଲି ।

ଶରତ : ସୁନିଲ ମହାପାତ୍ର ଗାଆଁକୁ ଆସିଚ଼ନ୍ତି ।

ମହେନ୍ଦ୍ର : ଏକା ଆସିଚ଼ି ନା, ତା ସାଙ୍ଗରେ ଆଉ କିଏ ଆସିଚ଼ି ?

ଆଲୋକ : ତାଙ୍କ ଝିଅ ଅସୀମା ମଧ ତାଙ୍କ ସାଙ୍ଗରେ ଆସିଛନ୍ତି ।

ମହେନ୍ଦ୍ର : ବୁଝିଲି ।

ମଦନ : କ'ଣ ବୁଝିଲେ ?

ମହେନ୍ଦ୍ର : ତାଙ୍କ ଯୁବତୀ ଝିଅ ଆସିଛନ୍ତି ତାଙ୍କ ସାଙ୍ଗରେ ।

ଶରତ : ସୁନିଲବାବୁ କହୁଛନ୍ତି, ସିଏ ଆଉ ଆମେରିକା ଫେରିଯିବେ ନାହିଁ । ସବୁଦିନ ପାଇଁ ଏଇଠି ଆମ ଗାଆଁରେ ରହିବେ ।

ମହେନ୍ଦ୍ର : ରହିବ ? ରହୁ । (ଗମ୍ଭୀର ହୋଇଗଲା ) କିଏ ମନା କଲା ?

ମଦନ : ସିଏ କହୁଥିଲେ ତାଙ୍କ ଜମିବାଡ଼ି ଘର....

ମହେନ୍ଦ୍ର : ତାଙ୍କ ଘର ଜମି ? ତାଙ୍କର ତ ଏଠି ସେ ସବୁ କିଛି ନାହିଁ ।

ଆଲୋକ : ତାଙ୍କ ଘର, ଜମି କୁଆଡେ ଗଲା ?

ମହେନ୍ଦ୍ର : ତା ବାପା ଅନିଲ ମହାପାତ୍ର ସେସବୁ ମୋତେ ବିକ୍ରି କରିଦେଇଚ଼ନ୍ତି ।

ଆଲୋକ : କିନ୍ତୁ ସିଏ ତ କହୁଛନ୍ତି ସିଏ କି ତାଙ୍କ ବାପା କେହି ଜମି କିମ୍ବା ଘର କାହାକୁ ବିକ୍ରି କରି ନାହାଁନ୍ତି ।

ମହେନ୍ଦ୍ର : ସିଏ ମନା କରିଦେଲା ଆଉ ତମେ ତା କଥା ବିଶ୍ୱାସ କରି ଚାଲି ଆସିଲ ? ତମେ ସବୁ ପାଠ, ଶାଠ ପଢ଼ିଚଟି ? ତମ ମୁଣ୍ଡରେ କ'ଣ ବୁଦ୍ଧି ଅକଲ କିଛି ନାହିଁ ?

ମଦନ : (ରାଗିଯାଇ) ଆମ ମୁଣ୍ଡରେ ବୁଦ୍ଧି ଅକଲ ଅଛି କି ନାହିଁ, ସେ କଥା ପଛେ ବୁଝିବ, ତମେ ଆଗ କୁହ ତମ ପାଖରେ ତାଙ୍କ ଜମିବାଡ଼ି, ଘର ବିକ୍ରିଖର୍ଦ୍ଦି କାଗଜପତ୍ର ଅଛି କି ନାହିଁ ?

ମହେନ୍ଦ୍ର : ହାତରେ କାଗଜ ନଧରି ଏତେ କଚା କାମ ଏ ମହେନ୍ଦ୍ର ବିଶ୍ୱାଳ କେବେ କରିନାହିଁ କି ଭବିଷ୍ୟତରେ କେବେ କରିବ ନାହିଁ । କିଏ ଗାଈ ଚରେଇଲେ ମୁଁ ମଣିଷ ଚରାଉଛିଟି ! ମତେ ଭଏ ଶିଖେଇବେ ମାମଲତି ?

ଶରତ : ଠିକ୍ ଅଛି । ଆମକୁ ସେ ବିକ୍ରିଖର୍ଦ୍ଦି କାଗଜ ଦେଖେଇ ଦିଅ ଆମେ ତାକୁ ବୁଝାଇ ଦେବୁ ।

ମହେନ୍ଦ୍ର : ତମେ ସବୁ ପିଲାଲୋକ, କାଗଜପତ୍ର ବିଷୟରେ ତମର କି ଜ୍ଞାନ ଅଛି ?

ମଦନ : ଆମେ କ'ଣ କାଗଜପତ୍ର ପଢ଼ିବାକୁ ଅକ୍ଷମ ? ତମେ ଦେଖା ।

ମହେନ୍ଦ୍ର : କାଗଜପତ୍ର ଦେଖିବାକୁ ତମେ ସବୁ କିଏ ? ତମେ କ'ଣ ପୋଲିସ ନା ବିଚାରପତି ?

ଆଲୋକ : ଆମେ ତାହେଲେ ସୁନିଲବାବୁଙ୍କୁ ଡାକି ଦେଉଚୁ, ସିଏ ତାଙ୍କ କାଗଜପତ୍ର ନିଜେ ଦେଖିକି ଯିବେ ।

ମହେନ୍ଦ୍ର : ନା, କାଗଜପତ୍ର ମୁଁ କାହାକୁ ଦେଖାଇ ପାରିବି ନାହିଁ । ଯିଏ ଦେଖିବ ସିଏ କୋର୍ଟ କଚେରୀରେ ଦେଖିବ ।

(ଆଲୋକ, ଶରତ ଓ ମଦନ ତିନିଜଣ ପରସ୍ପରଙ୍କ ମୁହଁକୁ ଚାହିଁଲେ, ଠାରାଠାରି ହୋଇ ଏକ ସଙ୍ଗରେ ଉଠି ଠିଆହେଲେ ।)

ମଦନ : ଆସ ଯିବା । (ତିନି ଜଣଯାକ ଉତ୍ୟକ୍ତହୋଇ ଯିବାକୁ ବାହାରିଲେ ।)

ମହେନ୍ଦ୍ର : କିରେ ତମେ ସବୁ ଏମିତି ରାଗୁଚ କାହିଁକି ?

ଆଲୋକ : ତମେ ସେମିତିଆ କଥା କହୁଚ, ଆମେ ରାଗିବୁ ନାହିଁ । ତମେ ଏକା ପୋଲିସ ଆଉ କୋର୍ଟ କଚେରୀ ଦେଖିଚ, ଆଉ କ'ଣ କେହି ଦେଖି ନାହାଁନ୍ତି ?

ଶରତ : ଆଛା, ତମେ ଯଦି ପ୍ରକୃତରେ କିଣିଚ, କାଗଜପତ୍ର ଦେଖାଇ ଦେଉନା, ଝମେଲା ବଢ଼ାଉଚ କାହିଁକି ?

ମଦନ : ବୁଝିଲୁ ଶରତ ! ସେ ତେଲମରା କାମ ଗୁଡ଼ା ମତେ ଆଦୌ ଭଲ ଲାଗେ ନାହିଁ । ଏତେ କଥାକୁ ଆମକୁ କ'ଣ ମିଳିବ? ସିଏ ଯଦି ଆମକୁ କାଗଜପତ୍ର ନ ଦେଖେଇବେ, ଆମେ କାଲି ଆମ କ୍ଲବ ତରଫରୁ ଗାଆଁ ସଭା ଡାକିବା । ସେଠିକି ସୁନିଲ ମହାପାତ୍ର ମଧ ଯିବେ । କଥାଟା ସେଠି ପକାଇ ଦେବା । ଆମକୁ ସିନା ନାଲି ଆଖି ଦେଖେଇ ଦଉଚନ୍ତି, ଗାଆଁ ସଭାକୁ କେମିତି ନାଲିଆଖି ଦେଖେଇବେ ମୁଁ ଦେଖିବି ।

ଆଲୋକ : କିଛି ଲୋକଙ୍କୁ କିଛି ଦିନ ପାଇଁ ହୁଏତ ଠକି ହେବ, କିନ୍ତୁ ସବୁଲୋକଙ୍କୁ ସବୁଦିନ ପାଇଁ କେହି ଠକି ପାରିନାହିଁ କି ପାରିବେ ନାହିଁ । ସତ ପାତାଳ ଫୁଟି ବାହାରିବ ।

ମଦନ : ଆମକୁ ତମେ ଯେତେ ମୁହଁ ତୋଡ଼ ଦେଖେଇଲେ ବି କଥାଟା କ'ଣ ଜଣା ପଡ଼ିଯାଉଚ଼ି । ଯେତେ ଲୁଚିଲେ କ'ଣ ହେବ ? ଗୋଡ଼ ଦିଇଟା ଦିଶୁଚ଼ି ।

ମହେନ୍ଦ୍ର : ମୁଁ ଶୁଣିଲି ତମେ କୁଆଡ଼େ ସୁନିଲ ମହାପାତ୍ର ଆଉ ତା ଝିଅକୁ କ୍ଲବରେ ରଖେଇଚ଼ ? ଏ କଥା କ'ଣ ସତ ?

ମଦନ : ତମେ ସେଥିରୁ କ'ଣ ପାଇବ ?

ଶରତ : ସିଏ ଏ ଗାଆଁର ପୁଅ, ଆମେରିକାରେ ପ୍ରଫେସର ଥିଲେ । ସିଏ ଆମ ଗାଆଁର ଜଣେ ଯୋଗ୍ୟ ସନ୍ତାନ । ତାଙ୍କୁ କ୍ଲବରେ ସ୍ଥାନ ଦେବାଟା କ'ଣ ଅନ୍ୟାୟ ନା ପାପ ?

ଆଲୋକ : ବରଂ ତାଙ୍କ ପାଦଧୂଳି ପଡ଼ି ଆମ କ୍ଲବ ଧନ୍ୟ ହୋଇଗଲା ।

ମହେନ୍ଦ୍ର : ତମେ ସବୁ ତା ବିଷୟରେ ଏତିକି ଜାଣିଚ ନା, ଆଉ ଅଧିକା କିଛି ଜାଣିଚ଼ ?

ମଦନ : ଆମେ ତ ଏତିକି ଜାଣୁଚୁ, ତମେ ଆଉ କି ଖମ ଆଳୁଟେ ଜାଣିଚ଼ କହୁନା ?

ମହେନ୍ଦ୍ର : ତମେ ସବୁ ବସ ମୁଁ କହୁଛି । ଆରେ ଶଙ୍କର କିରେ ଏତେବେଳ ଯାଏ ଚା'ଟିକେ ପାଇଁ କୁଆଡ଼େ ଯାଇଚୁ ?

ଆଲୋକ : ଚା, ଫା ଦରକାର ନାହିଁ । ଆମେ ବସୁଚୁ, ତମେ ଯାହା କହିବା କଥା କୁହ । ବସରେ ମଦନ । ଶରତ ବସ । (ସମସ୍ତେ ବସିଲେ)

ମଦନ : କ'ଣ ଜାଣିଚ଼ କୁହ ?

ମହେନ୍ଦ୍ର : ସୁନିଲ ମହାପାତ୍ର ଆମ ଗାଆଁର ଉନ୍ନତି ଦେଖି ସହିପାରୁନାହିଁ ।

ଆଲୋକ : ଏଇଟା ନିହାତି ମନଗଢ଼ା କଥା । ଆମେ ଦୁଧଖିଆ ଛୁଆ ହେଇନାହୁଁ ଯେ ତମେ ଯାହା କହିବ ଆମେ ଚଁ ଚାଁ କରି ପିଇଯିବୁ ।

ମହେନ୍ଦ୍ର : ସିଏ ଭାବୁଛି ସିଏ ଏକୁଟିଆ ଉନ୍ନତି କରିଥାଆନ୍ତା ଆଉ ଆମର ଏ ଗାଆଁ ତିରିଶ ବର୍ଷ ତଳେ ଯେମିତି ଅନୁନ୍ନତ ଥିଲା ସେମିତି ଥାଆନ୍ତା । ଆମେ ସେମିତି ମଳିମୁଣ୍ଡିଆ ହେଇ ପଡ଼ିଥାଆନ୍ତୁ । ସିଏ ଆମେରିକାରୁ ସୁଟ୍ ବୁଟ୍ ପିନ୍ଧି ଆସିବା ବେଳେ ଆମେ ତା ଆଗରେ ହାତଯୋଡ଼ି କାକୁସ୍ତ ହୋଇ ଠିଆ ହୋଇଥାଆନ୍ତୁ ।

ଶରତ : ଏଗୁଡ଼ା ନିହାତି ମିଛକଥା । ସିଏ ଏ କଥା ମୋତେ କହୁ ନାହାନ୍ତି ।

ମହେନ୍ଦ୍ର : (ଥଟା କରି) କହୁ ନାହାନ୍ତି ? ଆଉ କ'ଣ କହୁଛନ୍ତି ?

ମଦନ : ତମେ ତାଙ୍କୁ ମିଛରେ ଗାଆଁ ରାଜନୀତି ଭିତରକୁ ଟାଣୁଛ ।

ମହେନ୍ଦ୍ର : ସିଏ କୁଆଡ଼େ ଗାଆଁର ଏଠି ସେଠି ବୁଲି ତା ପିଲାଦିନର ସ୍ମୃତି ସାଉଁଟୁଛି ।

ଆଲୋକ : ସ୍ମୃତି କ'ଣ ସାଉଁଟୁଛନ୍ତି ?

ମହେନ୍ଦ୍ର : ସିଏ ସ୍କୁଲ ଯାଉଥିବା ପିଲାଦିନର ସେଧୂଳି ଦାଣ୍ଡ ଆଉ ନାହିଁ । ଗାଆଁ ଦାଣ୍ଡ ପିଚୁ କରାଯାଇଛି । ତେଣୁ ତାର ମନ ଭାରି ଦୁଃଖ । ଧୂଳିଦାଣ୍ଡ ଥିଲେ ତା ପାଦଚିହ୍ନ ଥାଆନ୍ତା । ସେ ପାଦଚିହ୍ନ ଦେଖିଲେ ତା ପିଲାଦିନର ସ୍ମୃତି ମନେ ପଡ଼ନ୍ତା । ସିଏ ସ୍ମୃତି ରୋମନ୍ଥନ କରି ଖୁସିରେ ଫାଟି ପଡ଼ନ୍ତା । ତା ପାଦ ଚିହ୍ନ ନଷ୍ଟ ହେଇଯିବ ବୋଲି କ'ଣ ଆମ ଗାଆଁ ଦାଣ୍ଡକୁ ପିଚୁ ନ କରି ଆମେ ଏ ଯାଏ ସେମିତି ଧୂଳିଆ ରଖିଥାନ୍ତୁ ?

ଶରତ : ବିଦେଶରେ ବହୁଦିନ ଥିବା ଲୋକମାନେ ଗାଆଁକୁ ଆସି ପିଲାଦିନର ସ୍ମୃତି ଖୋଜିବା କିଛି ପାପ କାମ ନୁହଁ । (ଏହି ସମୟରେ ଶଙ୍କର ଚାରିକପ୍ ଚା ଆଣି ପହଞ୍ଚିଲା)

ମହେନ୍ଦ୍ର : ଠିଆ ହେଲୁ କ'ଣ ? ଦେ, ସମସ୍ତଙ୍କୁ ଚା ଦେ ।
(ଶଙ୍କର ଚା ଥୋଇଦେଲା, ଚାଲିଗଲା) ଆରେ ଚା ପିଅ ।

ମଦନ : ନା, ଚା ପିଇବା ଦରକାର ନାହିଁ । ଆଉ କଣ କହିବାର ଅଛି କୁହ ?

ମହେନ୍ଦ୍ର : ଟିବି, ଲଣ୍ଡନ ଜାଗାରେ ବିଜୁଳିବତୀ ଦେଖି ତା ମନ ଭାରି ଦୁଃଖ । (ହସିଲା) ତମେ ପଚାରୁନା କାହିଁକି ?

ଶରତ : କାହିଁକି ?

ମହେନ୍ଦ୍ର : (ହସିଲା) ସେଇ ସ୍ମୃତି ।

ମଦନ : ଏଥିରେ କି ସ୍ମୃତି ଅଛି ?

ମହେନ୍ଦ୍ର : ଅଛି । ଗାଆଁରେ ଏବେ ବିଜୁଳିବତୀ ଥିବାରୁ ଗାଆଁ ଦାଣ୍ଡରେ ଆଉ ସେ ଜହ୍ନ ଆଲୁଅ ନାହିଁ । ଆମ ଗାଆଁର ଜହ୍ନରାତି ଯାହା ତାର ସ୍ମୃତିର ଶାମୁକା ଭିତରେ ଶୋଇଥିଲା ତାହା ଏ ବିଜୁଳି ଆଲୁଅରେ ହଜି ଯାଇଛି ।

ଆଲୋକ : କିଏ କ'ଣ ସ୍ମୃତି ଖୋଳିଲା ନ ଖୋଳିଲା ଆମକୁ ସେଥିରୁ କ'ଣ ମିଳିବ ?

ମହେନ୍ଦ୍ର : ସୁନିଲ ମହାପାତ୍ର ତମ କ୍ଲବ ବିରୋଧରେ ଗାଆଁ ଲୋକମାନଙ୍କୁ ମତଉଛି ।

ଶରତ : ଏଇଟା ନିହାତି ମିଛକଥା । ସିଏ ଯଦି ଆମ ବିରୋଧରେ ଲୋକମାନଙ୍କୁ ମତଉଥାନ୍ତା, ତାହେଲେ ସାହାଯ୍ୟ ପାଇଁ ଆମ ପାଖକୁ ଆସିଥାନ୍ତା କାହିଁକି ?

ମହେନ୍ଦ୍ର : ତମେ ସବୁ ଅଳ୍ପ ବୟସର ପିଲା । ମଣିଷ ଚିହ୍ନିବା ବୟସ ତମର ହୋଇନାହିଁ ।

ଆଲୋକ : ସିଏ ଆମ ବିରୋଧରେ ଲୋକମାନଙ୍କୁ ଉସ୍କାଉଥିଲା ବୋଲି ତୁମ ପାଖରେ କିଛି ପ୍ରମାଣ ଅଛି ?

ମହେନ୍ଦ୍ର : ମୁଁ ହାତରେ ସାକ୍ଷୀ ପ୍ରମାଣ ନ ରଖି କେବେ କିଛି କହେ ନାହିଁ । ମଙ୍ଗଳାପୀଠ ବରଗଛକୁ ହାଣି ତମେ ସେ ଜାଗାରେ କ୍ଲବଘର କରିଛ ବୋଲି ସୁନିଲ ମହାପାତ୍ର ତୁମ ବିରୋଧରେ ଗାଆଁ ଲୋକଙ୍କୁ କହୁଛି । କିହୋ କହ୍ନେଇ ଲାଗି ସିନା ଗୋପଦାଣ୍ଡ ! ମଙ୍ଗଳାଙ୍କ ପାଇଁ ସିନା ବରଗଛ ! ମଙ୍ଗଳାମୂର୍ତ୍ତିକୁ ଚୋର ନେଲାପରେ ବୁଢ଼ା ବରଗଛଟାର ଆଉ କ'ଣ ଦରକାର ? କ୍ଲବ ପିଲାମାନେ ବରଗଛଟାକୁ କାଟି ସେ ଜାଗାରେ କ୍ଲବଘର ତିଆରି କରିବାଟା କ'ଣ ଏମିତି ଖରାପ ହେଇଗଲା ?

ମଦନ : ଆମ କ୍ଲବ ବିରୋଧରେ କହୁଥିଲା ? କମ୍ ମାରାତ୍ମକ ନୁହେଁ ଲୋକଟା ?

ମହେନ୍ଦ୍ର : ମୋ କଥା ଯଦି ତମର ବିଶ୍ୱାସ ନ ହେଉଚି, ତମେ ଆମ ଗାଆଁ ଭୋଳିକି ପଚାର । ତାକୁ ସୁନିଲ ମହାପାତ୍ର କ'ଣ କହୁଥିଲା ତାଠୁ ବୁଝ ।

ଶରତ : ତମେ ତ କହୁଛ, ତାକୁ ପଚାରିଲେ ଅଧିକାଟେ କ'ଣ ହେବ ?

ମହେନ୍ଦ୍ର : ନିଅ ପିଲେ ଧର, ଚା'ଟା ଥଣ୍ଡା ହେଇଗଲା । ଶରତ, କିରେ ଧର । ଆଲୋକ, ମଦନ ଆରେ ନିଅ । (ତିନିହେଁ ତିନିଙ୍କ ମୁହଁକୁ ଚାହିଁଲେ)

ମହେନ୍ଦ୍ର : ଚା' ଥଣ୍ଡା ହେଇଯିବ, ନିଅ ଧର । (ସମସ୍ତେ ଚାଆ ପିଇଲେ)

ମହେନ୍ଦ୍ର : ଏ ସୁନିଲ ମହାପାତ୍ର ଏତେ ଦିନ ଆମେରିକାରେ ରହିବା

ପରେ ଏବେ କାହିଁକି ଗାଆଁକୁ ଆସିଛି ? ଯାହାର ଗାଆଁ ଭୂଇଁ ଆଜିଯାଏ ମନେ ପଡୁ ନଥିଲା, ଏତେ ଦିନ ପରେ ତାର ଗାଆଁ କଥା ମନେ ପଡ଼ିଲା କାହିଁକି ?

ମଦନ : କାହିଁକି ?

ମହେନ୍ଦ୍ର : ସୁନିଲ ମହାପାତ୍ର ଆମେରିକା ବିରୋଧରେ ଗୁପ୍ତଚର କାମ କରୁଥିଲା ।

ମଦନ : ଗୁପ୍ତଚର କାମ କରୁଥିଲା ?

ମହେନ୍ଦ୍ର : ହଁ । ଗୁପ୍ତଚର କାମ କରୁଥିଲା ?

ଆଲୋକ : କୋଉ ଦେଶ ପାଇଁ ?

ମହେନ୍ଦ୍ର : ସେ କଥା ମୁଁ ଠିକ୍ ଭାବେ କହିପାରିବି ନେଇଁ । ତେବେ ଯୋଉ ଦେଶଠୁ ଟଙ୍କା ପାଇଥିବ ସେ ଦେଶ ପାଇଁ ଗୁପ୍ତଚର କାମ କରୁଥିବ । ପଇସା ପାଇଁ ସୁନିଲ ମହାପାତ୍ର ସବୁକାମ କରିପାରିବ ।

ଶରତ : ଯିଏ ଆମେରିକାରେ ପ୍ରଫେସର ଥିଲା ତାର ପଇସାର କ'ଣ ଅଭାବ ଥିଲା ଯେ ସିଏ ପଇସା ପାଇଁ ଗୁପ୍ତଚର କାମ କରିବ ?

ମହେନ୍ଦ୍ର : (ଠୋ ଠୋ ହୋଇ ହସିଲା) ତୁମେ ସବୁ ପଇସା ରୋଜଗାର କରିନା ସେଥିପାଇଁ ସେ କଥା ଜାଣିନା । ଯାହାର ଯେତେ ଅଧିକ ପଇସା ତାର ସେତେ ଅଧିକ ରୋଜଗାର ଶୋଷ । ସେ ଶୋଷର ଶେଷ ନାହିଁ କି ସୀମା ନାହିଁ । ପଇସା ନିଶାରେ ସିଏ ସବୁ କରିପାରେ । ଏମିତି ପଇସା ନିଶାରେ ପାଗଳ ହୋଇ ସୁନିଲ ମହାପାତ୍ର ଗୁପ୍ତଚର କାମ କରୁ କରୁ ଧରାପଡ଼ିଲା । ଆମେରିକା ସରକାର ତାକୁ ଧକ୍କା, ବେଙ୍କା ଦେଇ ବାହାର କରିଦେଲେ ।

ମଦନ : ଆମେ କ'ଣ ଏତେ କଥା ଜାଣିଛୁ ?

ମହେନ୍ଦ୍ର : ଆମେରିକାରୁ ତଡ଼ା ଖାଇବାରୁ ତାର ଦେଶ ଆଉ ଗାଆଁ ଭୂଇଁ ମନେ ପଡ଼ିଲା । ଅନ୍ୟ ଉପାୟ ନ ପାଇ ସିଏ ଗାଆଁକୁ ଆସିବାକୁ ବାଧ୍ୟ ହେଲା । ଯାହାର ଅଭ୍ୟାସ ଯାହା ସିଏ କ'ଣ କେବେ ଛାଡ଼ି ପାରିବ ? ତା ମତି ଗତି ମତେ କେମିତି, କେମିତି ଲାଗୁଛି । ସିଏ କୁଆଡ଼େ......

ଶରତ : କ'ଣ ?

ମହେନ୍ଦ୍ର : ସିଏ କୁଆଡ଼େ ଏଠି ସବୁଆଡ଼ ବୁଲି ଦେଖୁଛି । ସବୁ ଜାଗାର ଫଟୋ ଉଠାଉଛି । ମୋର ସନ୍ଦେହ ହେଉଛି ଏଠି ମଧ୍ୟ ସିଏ ଗୁପ୍ତଚର କାମ କରୁଛି ।

ଆଲୋକ : ଏଠି କି ଗୁପ୍ତଚର କାମ କରୁଚି ?

ମହେନ୍ଦ୍ର : ସୁନିଲ ମହାପାତ୍ର ଗୁପ୍ତଚର, ସିଏ ଆମ ଦେଶର ଶତ୍ରୁ, ଆମ ଗାଆଁର ଶତ୍ରୁ । ଆମ ସମସ୍ତଙ୍କର ଶତ୍ରୁ ।

ମଦନ : ଏଠି ଆମ ଗାଆଁରେ କ'ଣ କେମିତି ଗୁପ୍ତଚର କାମ କରିବ ? ଏଠି କ'ଣ ଅସ୍ତ୍ରାଗାର ଅଛି ନା, ଏଠି ବିମାନଘାଟି ଅଛି ?

ମହେନ୍ଦ୍ର : ମୁଁ ସେ କଥା କେମିତି କହିବି ? ଆମ ଦେଶରେ ଏଇନେ ଅନେକ ଉଗ୍ରପନ୍ଥୀ, ବିଛିନ୍ନତାବାଦୀ, ଦେଶକୁ ଖଣ୍ଡ ଖଣ୍ଡ କରିବାକୁ ଲାଗିଛନ୍ତି । ପ୍ରତିଦିନ ଖବର କାଗଜରେ ନାନା କଥା ବାହାରୁଛି । ଏସବୁ ପଛରେ ଆମ ଶତ୍ରୁଦେଶମାନଙ୍କର ହାତ ଅଛି । ଶତ୍ରୁମାନେ ଏ ଦେଶରେ ପଶିଲେ ଆମେ ଚିହ୍ନି ପକାଇବା, ସେଥିପାଇଁ ସେମାନେ ଏଇ ସୁନିଲ ମହାପାତ୍ର ପରି ଲୋକ ଯେଉଁମାନେ ବିଦେଶରେ ଅନେକ ବର୍ଷ ଧରି ରହିଛନ୍ତି ସେଇମାନଙ୍କୁ ମୋଟା ଧରଣର ଟଙ୍କା ପଇସା ଦେଇ ଆମ ଦେଶର ଗୁପ୍ତଖବର ନେଉଛନ୍ତି । ତାଙ୍କରି ଜରିଆରେ ଉଗ୍ରପପନ୍ଥୀମାନଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଉଛନ୍ତି ।

ଶରତ : ଟଙ୍କା ଲୋଭରେ କ'ଣ ଜଣେ ଏତେ ତଳକୁ ଖସିପାରେ ?

ମହେନ୍ଦ୍ର : ଯେଉଁମାନେ ଟଙ୍କା ପାଇଁ ଦେଶ, ଗାଆଁ ସବୁ ଭୁଲି ବିଦେଶ ମାଟିରେ ତିରିଶ ବର୍ଷକାଳ ମୁହଁମାଡ଼ି ପଡି ରହି ପାରନ୍ତି ସେମାନେ ଟଙ୍କା ପଇସା ଲୋଭରେ ଯେ କୌଣସି କାମ କରିପାରନ୍ତି ।

ଆଲୋକ : କଥାଟା ଏବେ ପରିଷ୍କାର ହୋଇଗଲା ।

ମଦନ : କ'ଣ ପରିଷ୍କାର ହେଇଗଲା ।

ଆଲୋକ : ସୁନିଲ ମହାପାତ୍ର ଯଦି ଗାଆଁରେ ସବୁଦିନ ରହିବାକୁ ଆସିଥାନ୍ତା ତାହେଲେ କ'ଣ କେବଳ ଦିଖଣ୍ଡ ବ୍ରିଫ୍‌କେଶ୍ ଧରି କି ଆସିଥାନ୍ତା ?

ଶରତ : ସିଏ ନିଶ୍ଚୟ ତାଙ୍କ ଜିନିଷପତ୍ର ଅନ୍ୟ କୌଣସି ସହରରେ

ରଖିକି ଆସିଛନ୍ତି ।

ମହେନ୍ଦ୍ର : ତମେ ସବୁଠିକ୍ ଅନୁମାନ କରିଛ । ସୁନିଲ ମହାପାତ୍ର ଏଠି ସବୁଦିନ ରହିବାକୁ ଆସି ନାହିଁ । ଏଠିକି କିଛି ମତଲବରେ ଆସିଛି । ତା କାମ ସରିଲେ ଏଠୁ ପୁଣି କେତେବେଳେ ଖସି ଚାଲିଯିବ । ଗୁପ୍ତଚରମାନେ କୌଣସି ସ୍ଥାନରେ ସ୍ଥାୟୀ ଭାବରେ ରୁହନ୍ତି ନାହିଁ । ତାକୁ ଅନ୍ୟମାନେ ସନ୍ଦେହ କରିବା ଆରମ୍ଭ କଲେ ସିଏ ସେ ସ୍ଥାନ ଛାଡ଼ି ଅନ୍ୟ ସ୍ଥାନକୁ ଚାଲିଯାଏ ।

ଶରତ : ସିଏ ଏ ସ୍ଥାନ ଛାଡ଼ି ଚାଲିଯିବା ପୂର୍ବରୁ ଆମେ ପୋଲିସକୁ ଜଣାଇ ଦେବା ଉଚିତ ।

ମହେନ୍ଦ୍ର : ମତେ ସେ କାମ ଛାଡ଼ି ଦିଅ । ତମେ ଗୋଟେ କାମ କର ।

ଶରତ : ଆଉ କି କାମ ?

ମହେନ୍ଦ୍ର : ତମେ ସେ ସୁନିଲ ମହାପାତ୍ର ଆଉ ତା ଝିଅକୁ କ୍ଲବଘରୁ ବାହାର କରିଦିଅ ।

ମଦନ : ଆମେ ତାକୁ କାଲି ସଫା ସଫା କହିଦେବୁ କ୍ଲବରେ ତୁମ ପାଇଁ ସ୍ଥାନ ନାହିଁ । ତୁମେ ଚାଲିଯା ।

ମହେନ୍ଦ୍ର : କାଲି ନୁହଁ, ଆଜି । ଏଇ ରାତିରେ ତାକୁ କ୍ଲବରୁ ବିଦା କରିଦିଅ ।

ଆଲୋକ : ରାତି ଅନେକ ହେଲାଣି, ପୁଣି ଶୀତ ରାତି । ଏତେ ରାତିରେ ସେମାନେ କୁଆଡ଼େ ଯିବେ ? କୋଉଠି ରହିବେ ?

ମହେନ୍ଦ୍ର : ମୁଁ ତମ ଭଲ ପାଇଁ କହୁଚି । କଥାଟା ନିଶ୍ଚୟ ପୋଲିସ ଥାନକୁ ଯିବ । ଯିବ କ'ଣ ମୁଁ ତ ନିଜେ ପୋଲିସକୁ ଜଣେଇବି । ନହେଲେ ପୋଲିସ ସବ୍-ଇନିସ୍‌ପେକ୍ଟର ମତେ କହିବ- ତମ ଏ ଅଞ୍ଚଳରେ ଗୋଟେ ଗୁପ୍ତଚର ରହୁଛି, ତମେ ଜଣେ ଜାଣିବା ଶୁଣିବା ଲୋକ ହୋଇ ମତେ ରିପୋର୍ଟ ନ କଲ କେମିତି ? (ସମସ୍ତେ କିଛି ସମୟ ନୀରବ ରହିଲେ)

ମହେନ୍ଦ୍ର : କିରେ ମଦନ, ଶରତ କିଛି କହୁନା କାହିଁକି ? ଆଲୋକ କ'ଣ ଭାବୁଛୁ ? ତମେ ସବୁ ଶିକ୍ଷିତ ପିଲା । ତମର ଭବିଷ୍ୟତ ଅଛି । ଜାଣି ଜାଣି ଏ ବିଷଧର ସାପଟାକୁ କ୍ଲବଘରେ ସ୍ଥାନ ଦେବାଟା ଠିକ୍ ହେଲା ନାହିଁ ।

ଆଲୋକ : ନାଇଁ, ଆମେ କ'ଣ କହୁଥିଲୁ କି, ରାତିଟାରେ ବଡ଼ିଲା

ଝିଅଟାକୁ ନେଇ ସିଏ ଯିବ କୁଆଡ଼େ ?

ମହେନ୍ଦ୍ର : କିରେ ସେ ଦେଶଦ୍ରୋହୀ ପ୍ରତି ତମର ଏତେ ଦରଦ କାହିଁକି ? ତମେ କଥାଟାକୁ ଭଲ ଭାବରେ ବିଚାର କରି ଦେଖ । ପୋଲିସ ଯେତେବେଳେ ଜାଣିବ ଦେଶଦ୍ରୋହୀ ଗୁପ୍ତଚର ସୁଜିଲ ମହାପାତ୍ର ତମ କ୍ଲବରେ ରାତି କଟାଇଛି, ତମକୁ ଥାନାକୁ ନେଇ ନାନା କଥା ପଚାରିବ । ତମେ ସବୁ ସନ୍ତ୍ରାସବାଦୀ କି ଉଗ୍ରପନ୍ଥୀ ଦଳରେ ଯୋଗଦେଲଣି ବୋଲି ଭାବିବ ।

ଶରତ : ସତ କଥା । ପୋଲିସ୍‌ର ଚାରିକଡ଼େ ଧାର ।

ମହେନ୍ଦ୍ର : କଥା ଆଦାୟ କରିବା ପାଇଁ ପୋଲିସ୍ ତୁମ ଉପରେ ବଳ ପ୍ରୟୋଗ କରିପାରେ । ଥାନାରେ ପୂରାଇ ନିସ୍ତୁକ ମାଡ଼ ଦେଇପାରେ, ଦେହରେ କରେଣ୍ଟ୍ ଦେଇପାରେ କିମ୍ବା ନଖରେ ପିନ୍ କି ଲୁହାକଣ୍ଟା ପିଟିପାରେ ।

ଆଲୋକ : ଆମର ଏତେ ଝମେଲାରେ କିଏ ପଶିବ ? କ'ଣ କହୁଚୁ ?

ମଦନ : ଏତେ ଯଦି ଅସୁବିଧା ଅଛି, ତାକୁ ତୁରନ୍ତ କ୍ଲବରୁ ବିଦା କରିବାକୁ ପଡ଼ିବ ।

ମହେନ୍ଦ୍ର : ଆଜି ରାତି ରାତି ତାକୁ କ୍ଲବରୁ ବିଦା କରିଦିଅ ।

ମଦନ : ହଁ, ଏଇ ସାଙ୍ଗେ ସାଙ୍ଗେ ବିଦା କରିଦେବୁ ।

ମହେନ୍ଦ୍ର : ସିଏ ଯଦି କିଛି ଝମେଲା କରେ, ମତେ କହିବ । ମୁଁ ତା ବ୍ୟବସ୍ଥା କରିବି ।

ମଦନ : ଆମକୁ କ'ଣ ସିଏ ବଳେଇ ଯିବ ?

ଶରତ : ତମେ ପୋଲିସ୍‌ରେ ଖବର ଦିଅ । ଦେଶଦ୍ରୋହୀଟା ଏଠୁ ଖସିଯିବା ପୂର୍ବରୁ ପୋଲିସ ତାକୁ ଯେମିତି ଖୁଆଡ଼ରେ ଭର୍ତ୍ତି କରେ ।

ମହେନ୍ଦ୍ର : ତମେ ଯା ତମ କାମ କର । ମୁଁ ଚାଲିଲି ପୋଲିସ୍ ପାଖକୁ ।

ମଦନ : ଆସ, ଯିବା ଆସ ।

(ଆଲୋକ, ଶରତ ଓ ମଦନ ଚାଲିଯାଉଥିଲେ । ମହେନ୍ଦ୍ର ସେମାନଙ୍କୁ ପଛରୁ ଡ଼ାକିଲେ ।)

ମହେନ୍ଦ୍ର : ଆଲୋକ !

ଆଲୋକ : (ପଛକୁ ଫେରି) କ'ଣ ହେଲା ?

ମହେନ୍ଦ୍ର : (ଅନୁଚ୍ଚ ସ୍ୱରରେ) ଗୋଟେ ମାଲ୍ ଥିଲା ।

ଆଲୋକ : କି ମାଲ୍ ? କ'ଣ ତମ ଦୋକାନର ଦେଶୀମାଲ୍ ?

ମଦନ : ସେ ଗୁଡ଼ା ଚଳିବ ନେଇଁ ।

ମହେନ୍ଦ୍ର : ନା, ଫରେନ୍ ଜିନିଷ । ଚଳିବ ?

ଶରତ : ଅଛି ଯଦି ଦଉନା ପଚାରୁଛ କ'ଣ ? ସେ ଜିନିଷ ପାଇଲେ କିଏ କ'ଣ ଛାଡ଼େ ?

ମହେନ୍ଦ୍ର : ଭଲ ମାଲ୍‌ଟାଏ । ମୁଁ ମୋ ପାଇଁ ରଖିଥିଲି । ହେଲେ ତମେ ଶୀତ ରାତିଟାରେ ଆସିଥିଲ ଯେତେବେଳେ ....

ମଦନ : କ'ଣ ପୂରା ବୋତଲଟା ଅଛି ?

ମହେନ୍ଦ୍ର : ହଁ, ବୋତଲଟା ପୂରା ଅଛି । ତମେ ଟିକେ ଅପେକ୍ଷା କର, ମୁଁ ଆଣୁଛି । (ମହେନ୍ଦ୍ର ବିଶ୍ୱାଳ ଘର ଭିତରକୁ ଗଲେ)

ଶରତ : ଭଲ ଯୋଗରେ ଆଜି ରାତି ପାହିଥିଲା । ଫ ମାଗଣୁ ମାଲ୍‌ଟା ମିଳିଗଲା । ପୁଣି ଏମିତି ସେମିତି ନୁହଁ, ଏକାବେଳକେ 'ଫରେନ୍ ମାଲ୍ ।

ଆଲୋକ : ଆରେ ଦନେଇ ଦୋକାନଟା ବୋଧେ ବନ୍ଦ ହେଇ ଯିବଣି ।

ମଦନ : ସିଏତ ସେଇ ଦୋକାନରେ ଶୋଉଛି, ତାକୁ ଉଠାଇଲେ ସିଏ ଉଠିବ । ତା ଦୋକାନରେ କ'ଣ ଅଛି ?

ଆଲୋକ : ଖାଲି ମାଲ୍‌ଟା କ'ଣ ଜମିବ ? ଦନେଇ କି ତା ଦୋକାନକୁ ଉଠେଇଲେ କିଛି ନହେଲେ ମିକ୍ସଚର ପ୍ୟାକେଟ୍ ଗୋଟେ ଦେବ ।

ଶରତ : ହଁ କିଛି ମିକ୍ସଚର କି ଅଣ୍ଡା ହେଇଗଲେ ଚଳିଯିବ ।

ମଦନ : ଫରେନ୍ ମାଲ୍ ସାଙ୍ଗକୁ ଚିକେନ୍ ହେଲେ ଭଲ ହୁଅନ୍ତା ।

ଆଲୋକ : ଭଲ ହୁଅନ୍ତା ସତ, ହେଲେ ଏତେ ରାତିରେ ସେ ଜିନିଷ ଆସିବ କୁଆଡୁ ?

ମଦନ : ମାଲ୍‌ଟା ଆଜି ନେଇକି ରଖି ଦେବା । କୋଉଠୁ କିଛି ଯୋଗାଡ଼ କରି କାଲି ରାତିରେ ମାଲ୍‌ଟା ପିଇଲେ ବହି ଜମିବ ।

ଶରତ : ଆଜିର ମଜା କାଲିକି ଆଉ ରହିବ ? (ଏହି ସମୟରେ ଗୋଟେ ହାତରେ ମଦ ବୋତଲ, ଅନ୍ୟ ହାତରେ ଗୋଟେ ପଲିଥିନ୍‌ରେ କିଛି କଷା ଚିକେନ୍ ଧରିକି ଫେରିଲେ ମହେନ୍ଦ୍ର)

ମହେନ୍ଦ୍ର : କ'ଣ ବହି ଜମିବ ?

ଶରତ : ନାଇଁ .ସିଏ କିଛି ନୁହଁ ।

ମହେନ୍ଦ୍ର : ଆରେ ମୋ ଆଗରେ ଲାଜ ସରମ କ'ଣ ?

ଆଲୋକ : ମଦନ କହୁଥିଲା .....

ମଦନ : କିରେ ଆଲୋକ ! ତୁ ତ ଖୁବ୍ ଚୁପ୍ ସଇତାନ । କିରେ କଥାଟାକୁ ମୋ ନାଆଁରେ କ'ଣ ଗଡ଼େଇ ଦଉଚୁ ? ତୁ କ'ଣ କିଛି କହୁନଥିଲୁ ?

ମହେନ୍ଦ୍ର : ଆରେ କ'ଣ ହେଇଚି କୁହ ?

ଶରତ : ଏଇ କଥା କ'ଣ କି ..... ଫରେନ୍ ମାଲ୍‌ଟା ଖାଲି ଖାଲି ଖାଇଲେ ତାର କିଛି ଟେଷ୍ଟ ଆସିବ ନାହିଁତ .... ସେଇକଥା ଆମ ଭିତରେ ଆମେ କଥାବାର୍ତ୍ତା ହେଉଥିଲୁ । ହେଲେ ରାତି ବହୁତ ହେଇ ଗଲାଣି । ଏତେ ରାତିରେ କ'ଣ ଆଉ କୋଉଠୁ ଯୋଗାଡ଼ କରି ହେବ ?

ମହେନ୍ଦ୍ର : ଆରେ ଯିଏ ତୁମକୁ ମାଲ୍ ଦେଉଛି, ସିଏ ବି ମାଲ୍ ଖାଏ; ଏକଥା ତମେ ଜାଣିଚ ନା ନାଇଁ ?

ଆଲୋକ : ହଁ, ଜାଣିଚୁ ।

ମହେନ୍ଦ୍ର : ମାଲ୍ ସାଙ୍ଗେ ଯାହା ଯାହା ଦରକାର ମୁଁ କ'ଣ ଜାଣି ନାହିଁ ? ନିଅ । ବେଶୀ ନାହିଁ । (ପଲିଥିନ୍ ପୁଡ଼ିଆ ଓ ମଦ ବୋତଲଟା ବଢ଼ାଇ ଦେଲେ) ଅଳ୍ପ କିଛି କଷା ମାଂସ ଅଛି । ତିନି ଜଣଙ୍କୁ ହେଇ ଯିବ । ଆଉ ଏଇଟା ରମ୍ । (ଆଲୋକ ମାଂସ ପୁଡ଼ିଆ ଓ ମଦନ ମଦ ବୋତଲ ଆଣିଲେ)

ଶରତ : ଆମେ ତୁମକୁ କୋଉ ଭାଷାରେ ଧନ୍ୟବାଦ ଦେବୁ ଭାଷା ଖୋଜି ପାଉନାହୁଁ ।

ମହେନ୍ଦ୍ର : ତମେତ ଆମର ପିଲା । ତମର ସୁଖ ସୁବିଧା ଦେଖିବା ଆମର କାମ । ଧନ୍ୟବାଦ କ'ଣ ଦେବ ? ହଉ ତମେ ଏବେ ଯା । ଆଉ ଯେତେବେଳେ ଯାହା ଦରକାର ହେବ ମୋତେ କହିବ । (ଶରତ, ମଦନ ଓ ଆଲୋକ ଚାଲିଯାଉଥିଲେ । ମହେନ୍ଦ୍ର ସେମାନଙ୍କୁ ପୁଣି ପଛରୁ ଡାକିଲେ ।)

ମହେନ୍ଦ୍ର : ହଁ, ଶୁଣ । ଯେମିତି ହେଉ ସୁନିଲ ମହାପାତ୍ରକୁ ଆଜି ରାତାରାତି କ୍ଲବ ଘରୁ ବିଦା କର ।

ମଦନ : ସେଥିରେ ଆମେ ଖିଲାପ କରିବୁ ନାହିଁ ।

ମହେନ୍ଦ୍ର : ସିଏ ଯେବେ କାକୁତି ମିନତି ହେଲେବି ଶୁଣିବ ନାହିଁ । ତା ସୁନ୍ଦରୀ ଝିଅର ମୁହଁକୁ ଦେଖି ଭୁଲିଯିବ ନାହିଁ ।

ଶରତ : ଆପଣ ଆମ ଉପରେ ଭରସା ରଖନ୍ତୁ ।

ମହେନ୍ଦ୍ର : ଯଦି ତାକୁ ଏଇ ରାତି ରାତି କ୍ଲବ ଘରୁ ବିଦା ନ କରିଛ, କାଲି ପୋଲିସ ଆସିବ ଯଦି ଦେଖିବ ସେ ଗୁପ୍ତଚର ତୁମ କ୍ଲବ ଘରେ ଅଛି, ତାହେଲେ ତା ସହିତ ପୋଲିସ ତମ ସମସ୍ତଙ୍କୁ ଆରେଷ୍ଟ କରିବ ।

ମଦନ : ଆମେ ସାଙ୍ଗେ ସାଙ୍ଗେ ଯାଇକି ତାକୁ ଧକ୍କା ବେକ୍କା ଦେଇ କ୍ଲବ ଘରୁ ବିଦା କରିଦେବୁ । ତମେ ସେ ବିଷୟରେ ନିଶ୍ଚିତ ରୁହ ।

ମହେନ୍ଦ୍ର : ହଉ, ତମେ ଏଥର ଯା ।

(ଶରତ, ଆଲୋକ, ମଦନ ମଦ ଓ ମାଂସ ନେଇ ଚାଲିଗଲେ । ସେମାନଙ୍କ ଯିବା ପରେ ମହେନ୍ଦ୍ର ବିଶ୍ୱାଳ ସେମାନଙ୍କ ଗତି ପଥକୁ ଚାହିଁ ଚାପା ହସ ହସିଲା ।)



# ଚତୁର୍ଥ ଦୃଶ୍ୟ

(ଗାଆଁ ରାସ୍ତାରେ ବସିଛନ୍ତି ଆଲୋକ, ମଦନ ଓ ଶରତ । ତିନିହେଁ ମଦ ପିଉଛନ୍ତି ଓ ମାଂସ ଖାଉଛନ୍ତି । ମାତାଲ ହୋଇ ଏଣୁତେଣୁ ଗପୁଛନ୍ତି । ସମୟ ରାତି ଦଶଟା ।)

ମଦନ : ଏଇ ମଦନ ବୋତଲ ଗୋଟିଏ ସୁନ୍ଦରୀ ନାରୀ । ନାରୀ ଈଶ୍ୱରଙ୍କ ସର୍ବଶ୍ରେଷ୍ଠ ସୃଷ୍ଟି । ଈଶ୍ୱର ଖୁବ୍ ଅନ୍ୟାୟ କରୁଛନ୍ତି । କାହାକୁ ଗାଡ଼ି, ମଟର, ଉଡାଜାହାଜ ଦେଇଛନ୍ତି ଆଉ କିଏ ଚାଲିଚାଲି ତା ପାଦର ଚଟି ଛିଣ୍ଡି ଗଲାଣି । ଚଟି ଚମଡାରେ ତିଆରି ହୁଏ । ଚମଡ଼ା ଅନେକ ପ୍ରକାର । ଗାଈ ଚମଡା, ମଇଷି ଚମଡ଼ା, ଛେଳି ଚମଡା, ସାପ ଚମଡ଼ା ।

ଆଲୋକ : ଏ ଦୁନିଆର ସବୁଠୁ ଭଲ ଜିନିଷ ମଦ । ଦୁଧ, ମହୁ, ଘିଅ ଆଉ ମଦ, - ଏ ଚାରିଟା ଭିତରୁ କିଏ ଭଲ ? ମଦ ନା ଦୁଧ, ଘିଅ ନା ମହୁ ?

ଶରତ : କ'ଣ କହିଲୁ ? କିଏ ଭଲ ? ଯେତେ ଖାଦ୍ୟ ଅଛି ତା ଭିତରେ ସବୁଠୁ ଭଲ ମଦ, ଦୁନିଆରେ ଯେତେ ମଣିଷ ଅଛନ୍ତି ତାଭିତରେ ମୁଁ ସବୁଠୁ ଭଲ, ଯେତେ ଝିଅ ଅଛନ୍ତି ସବୁଠୁ ସୁନ୍ଦରୀ ମୋ ସଂଗୀତା ।

ଆଲୋକ : ନାଇଁବେ ସବୁଠୁ ଭଲ ମଦ ।

ଶରତ : ମୁଁ କ'ଣ କହିଲି ? ମୁଁ ତ କହିଲି ସବୁଠୁ ଭଲ ମଦ ।

ଆଲୋକ : ମଦକୁ ଶତକଡ଼ା ଶହେ ନମ୍ବର ମିଳିଲେ ଦୁଧକୁ ମିଳିବ ମୋଟେ ଶତକଡ଼ା ପଚିଶ, ଘିଅକୁ ପନ୍ଦର ଆଉ ମହୁକୁ ମୋଟେ ପାଞ୍ଚ । ସେଥିପାଇଁ ମଦ ପିଅନ୍ତି ଆମ ଦେଶର ପଇସାବାଲା ଲୋକ,ନେତା,ମନ୍ତ୍ରୀ, ଶିଳ୍ପପତି, ବଡ଼ବଡ଼ ଅଫିସର ।

ଶରତ : ଦେଖିଲୁ ଆଲୋକ ! ଏଇଟା କ'ଣ ? (ମଦ ବୋତଲଟାକୁ ଦେଖାଇ) ଏଇଟାକୁ ତୁ ଚିହ୍ନିପାରୁଛୁ ? ନା, ତୁ ଚିହ୍ନିପାରିବୁ ନେଇଁ । ଏଠି କେହି ଚିହ୍ନି ପାରିବେ ନାହିଁ ।

ମଦନ : ଚିହ୍ନିପାରିବେ ନେଇଁ କ'ଣ ବେ ? ଏଇଟାଗୋଟେ ମଦ ବୋତଲ । ଫରେନ୍ ମଦ ବୋତଲ ।

ଶରତ : (ଠୋ ଠୋ ହୋଇ ହସିଲା) ମୁଁ ଜାଣେ ତୁ ଚିହ୍ନିପାରିବୁ ନାହୁଁ । ମୁଁ ଚିହ୍ନେଇ ଦେଉଛି, ଚିହ୍ନ । ଏଇଟା ମୋ ସଂଗୀତାର ସୁନ୍ଦର ହାତ । କି ସୁନ୍ଦର, କି ମୁଲାୟମ, କି ସୁଠାମ, କି ନିର୍ଲୋମ ମୋ ସଂଗୀତାର ହାତ । ସଂଗୀତା ! ପ୍ରିୟତମେ ! ତମେ ମୋର ପ୍ରାଣ, ତମେ ମୋର ମନ ତମେ ମୋର ନୟନ । ଚାଲ ସଂଗୀତା ଆମେ ନାଚିବା ଆଉ ଗୀତ ଗାଇବା । ଏ ଶୀତୁଆ ଜହ୍ନ ରାତିରେ ମନ ଉଚ୍ଛନ୍ନ ହେଉଛି, ଉଉଳା ହେଉଛି । ଖାଲି ତମ ହାତରେ ହାତ ଛନ୍ଦି ଏ ରାତି ସାରା ନାଚିବାକୁ ମନ ହେଉଛି ।

ମଦନ : ନିହାତି ମଦୁଆଟାଏ । କିରେ ଏଠି ସଂଗୀତା କାହିଁ ? ଏଠି ଖାଲି ତୁ, ମୁଁ, ଆଲୋକ ଆଉ ଏଇ ମଦ । ମଦକୁ ଆମେ ପିଉଛେ, ମଦ ଆମକୁ ପିଉଛି । ପିଉ ଯିଏ ଯାହାକୁ ପିଉଛି । ପରୱା ନାହିଁ । ମଦ ପିଇଲେ ସ୍ୱର୍ଗକୁ ବାଟ ଫିଟିଯାଏ, ଶିଢ଼ି ଲମ୍ବିଯାଏ । ସେଇ ଶିଢ଼ିରେ ଚଢ଼ି ସ୍ୱର୍ଗକୁ ଯାଇହୁଏ । ମୁଁ ମଦ ପିଇଛି, ଶିଢ଼ିରେ ଚଢ଼ି ସ୍ୱର୍ଗକୁ ଯିବି ।

ଆଲୋକ : ମୁଁ ବି ତୋ ସାଙ୍ଗରେ ସ୍ୱର୍ଗକୁ ଯିବି ।

ଶରତ : ମୁଁ ତମ ସାଙ୍ଗରେ ସ୍ୱର୍ଗକୁ ନଯାଇ ମୋ ସଂଗୀତା ପାଖକୁ ଯିବି । ସଂଗୀତା ମୋର ସ୍ୱର୍ଗ ।

ମଦନ : ନା, ତମେ କେହି କୁଆଡ଼େ ଯିବ ନେଇଁ । ତମେ ଦିଇଟା ଶିଢ଼ି ହୁଅ ମୁଁ ତମ ଉପରେ ଚଢ଼ି ସ୍ୱର୍ଗକୁ ଯିବି ।

ଶରତ : ନାଇଁ ମୁଁ କାହାର ଶିଢ଼ି ହେଇ ପାରିବି ନେଇଁ । ମୁଁ ମୋ ସଂଗୀତା ପାଖକୁ ଯିବି ।

ମଦନ : ଆଲୋକ ତୁ ମୋର ଶିଢ଼ି ହୋ, ମୁଁ ତୋର ଶିଢ଼ି ହେବି । ଆମେ ଦୁହେଁ ଜଣକ ପରେ ଜଣେ ସ୍ୱର୍ଗକୁ ଯିବା । (ଆଲୋକ ଓ ମଦନ ଦୁହେଁ ଦୁହିଁକୁ ଶିଢ଼ି କରି ଚଢୁଥିଲେ ଏବଂ ବାରମ୍ବାର ଖସି ପଡୁଥିଲେ ।)

ଶରତ : କିରେ ତମେ ଦିଇଟା ଯଦି ସ୍ୱର୍ଗକୁ ଯିବ ଆମ କ୍ଲବକୁ କିଏ ଯିବ ?

ମଦନ : କ୍ଲବକୁ ? କୋଉ କ୍ଲବକୁ ?

ଶରତ : ଆମ କ୍ଲବକୁ । ତମେ ଦିଇଟା କ୍ଲବକୁ ଯା ।

ଆଲୋକ : ଆମକୁ କ୍ଲବକୁ ଯିବାକୁ ପଡ଼ିବ । ସୁନିଲ ମହାପାତ୍ରକୁ ସେଠୁ ବିଦା କରିବାକୁ ପଡ଼ିବ ।

ମଦନ : ଯିବାକୁ ପଡ଼ିବ ?

ଆଲୋକ : ହଁ ଯିବାକୁ ପଡ଼ିବ ।

ମଦନା : ହଉ ତେବେ ଚାଲ ।

ଶରତ : ନା, ତମେ ଦିଇଟା କ୍ଲବକୁ ଯା, ମୁଁ ଚାଲିଲି ମୋ ସଂଗୀତା ପାଖକୁ । (ଅନ୍ୟ ଆଡ଼େ ଚାଲି ଯାଉଥିଲା । ମଦନ ତା' ହାତ ଧରି ଟାଣି ଆଣିଲା)

ମଦନ : ସଂଗୀତା ସେୟାଡ଼େ ନାହିଁ । କ୍ଲବରେ ଅଛି । ତତେ ଅପେକ୍ଷା କରି ବସିଛି । ତୁ କ୍ଲବକୁ ଚାଲ । (ତିନିଜଣଯାକ ଧରାଧରି ହୋଇ କ୍ଲବକୁ ଗଲେ)



ଆନଂଦ ଚଂଦ୍ର ପହି

# ପଞ୍ଚମ ଦୃଶ୍ୟ

(କ୍ଲବ ଘର । ସମୟ ରାତି ଏଗାରଟା । ଖଲିପତ୍ରରେ ରୁଟି ଓ ଡାଲମା ଧରି ପହଞ୍ଚିଲେ ସୁନିଲ ମହାପାତ୍ର ।)

ସୁନିଲ : ଅସୀମା ! ଅସୀମା ! ନେ ।

ଅସୀମା : ରୁଟି ଡାଲମା ବ୍ୟତୀତ ଆଉ କ'ଣ କିଛି ମିଳିଲା ନାହିଁ ?

ସୁନିଲ : ଗାଆଁ ଦୋକାନରେ ଆଉ କ'ଣ ମିଳନ୍ତା ? ଯାହା ଯେମିତି ମିଳିଲା ଆଜି ରାତିଟା ଚଳେଇ ଦେ । କାଲି କିଛି ଗୋଟେ ବ୍ୟବସ୍ଥା କରିବା ।

ଅସୀମା : ମୁଁ ମୋ କଥା କହୁ ନେଇଁ । ତମେ ଏଇଆକୁ ଚଳେଇ ପାରିବ ତ ?

ସୁନିଲ : ଗାଆଁକୁ ଆସିବାକୁ ମୁଁ ଯେତେବେଳେ ସ୍ଥିର କଲି, ସେତେବେଳଠୁ ମୁଁ ନିଜକୁ ପ୍ରସ୍ତୁତ କରି ନେଇଛି, ଯାହା ଯେତେବେଳେ ମିଳିବ ବିନା ଆପତ୍ତିରେ ଗ୍ରହଣ କରିନେବି । ଆଉ ଡେ଼ରି କରନା । ବାଢ଼, ଖାଇଦେବା ।

ଅସୀମା : କ୍ଲବ ପିଲାମାନେ ଏ ପର୍ଯ୍ୟନ୍ତ କୁଆଡ଼େ ଗଲେ ?

ସୁନିଲ : ମହେନ୍ଦ୍ର ବିଶ୍ୱାଳ ଖୁବ୍ ଟାଉଟର । କୌଣସି କଥାକୁ ସହଜରେ ଗ୍ରହଣ କରିବା ଲୋକ ସିଏ ନୁହଁ ।

ଅସୀମା : ସେମାନେ କ'ଣ ତା ସହିତ କଳିଗୋଳ....

ସୁନିଲ : କିଛି ଅସମ୍ଭବ ନୁହେଁ । କ୍ଲବ ପିଲାମାନେ ଫେରିଲେ ସେ କଥା ଜଣା ପଡ଼ିବ । ତୁ ଆଣ, ସେମାନେ ଫେରିବା ପୂର୍ବରୁ ଆମେ ଖାଇବା କାମଟା ସାରିଦେବା ।

ଅସୀମା : ହଉ ତୁମେ ବସ ମୁଁ ବାଢୁଛି ।

ସୁନିଲ : ଏକାଠି ବାଢ଼, ଦୁହେଁ ଏକାଠି ଖାଇଦେବା ।

(ଅସୀମା ଖଲିରେ ରୁଟି ଡ଼ାଲମା ବାଢ଼ିଲା । ସୁନିଲ ଓ ଅସୀମା ଦୁହେଁ ଖାଇ ବସିଲେ । ଦୁହେଁ ଖଣ୍ଡେ, ଖଣ୍ଡେ ରୁଟି ପାଟିରେ ପୂରାଇଛନ୍ତି ଏତିକିବେଳେ ଆଲୋକ, ଶରତ ଓ ମଦନ ମାତାଲ ହୋଇ ଟଳିଟଳି କ୍ଲବକୁ ଫେରିଛନ୍ତି । ମଦନ ହଠାତ୍ ସେମାନଙ୍କ ଖାଇବା ପତ୍ର ଉପରେ ଗୋଡ଼ ପକାଇ

ବଳିଦେଲା ।)

ସୁନିଲ : ଆରେ.... ଆରେ.... ଏ କ'ଣ ହଉଚି ?
(ସୁନିଲ ଓ ଅସୀମା ଦୁହେଁ ଖାଇବା ଛାଡ଼ି ଉଠି ଠିଆ ହେଲେ ।)

ମଦନ : ଏତେ ଖାଇବା ପରେ ବି ତମ ପେଟ ପୂରିନେଇଁ ?

ସୁନିଲ : ଆମେ ଆଦୌ ଖାଇ ନାହୁଁ । ଖଣ୍ଡେ ବି ରୁଟି ପେଟକୁ ଯାଇ ନାହିଁ ।

ଶରତ : ତମ ପେଟରେ ସର୍ବଗ୍ରାସୀ ନିଆଁ ଜଳୁଛି ।

ଅସୀମା : ତମେ ଏ ସବୁ କ'ଣ କହୁଛ ?

ଶରତ : ଆମେରିକା ଦେଶଟାକୁ ଖାଇଖାଇ ପେଟ ପୂରିଲା ନାହିଁ, ଏଠିକି ଚାଲି ଆସିଲ ଆମ ଦେଶଟାକୁ ଚୋବାଇ ଖାଇବାକୁ ?

ସୁନିଲ : ତୁମ କଥା ମୁଁ କିଛି ବୁଝିପାରୁ ନାହିଁ ।

ଆଲୋକ : ଟଙ୍କାର ନିଶା ଯାହାକୁ ପାଗଳ କରିଛି, ସିଏ ଆଉ କିଛି ବୁଝିପାରିବ ନାହିଁ । ତା ଆଗରେ ଖାଲି ଟଙ୍କାର ତାଣ୍ଡବ ଚାଲିଛି । ତାକୁ ଡେ଼ଇଁ ସିଏ ଆଉ କିଛି ଦେଖିପାରୁ ନାହିଁ ।

ଅସୀମା : ତମେ ସବୁ ହୋସ୍‌ରେ ଅଛ ତ ? କି ଟଙ୍କା ? କି ନିଶା ?
(ତିନି ଜଣଯାକ ହୋ ହୋ ହୋଇ ବସିଲେ)

ମଦନ : (ହସି ହସି ଦେବମ ହୋଇ) କି ଟଙ୍କା, କି ନିଶା ତମେ ଜାଣିନା ନା ? ନା ତମେ କାହିଁକି ଜାଣିବ ? ସେଟା ଖୁବ୍ ଗୋପନୀୟ । ତମର ଏଇ ପରମ ପାରଙ୍ଗମ ପିତୃଦେବଙ୍କୁ ପଚାର, ସିଏ ନିଶ୍ଚୟ ତୁମର ସନ୍ଦେହ ମୋଚନ କରିବେ ।

ସୁନିଲ : ମୁଁ ସତ କହୁଛି, ତମେ କୋଉ ଟଙ୍କା କଥା କହୁଛ ମୁଁ ଆଦୌ ଜାଣିନାହିଁ । ମୋତେ ତୁମେ ବିଶ୍ୱାସ କର । ହାଉ୍ ଫେତ ଅନ୍ ମି ।

ଶରତ : ତୁମ ପରି ଦେଶଦ୍ରୋହୀ ଗୁଡାକୁ କିଏ ବିଶ୍ୱାସ କରେ ଯେ, ଆମେ କରିବୁ ?

ଅସୀମା : ଷଟ ଅପ୍, କିଏ ଦେଶଦ୍ରୋହୀ ? ତମେ ନା ଆମେ ? ଯିଏ ଏଇ ଦେଶରେ ରହି କିଛି କାମ ଦାମ ନ କରି ବେକାର ହୋଇ ବୁଲୁଛି , ମଦ ଖାଇ ବିଶୃଙ୍ଖଳ ଆଚରଣ କରୁଚି ନା ଯିଏ ବିଦେଶରୁ ଫେରୁଛି ନିଜ ମାଟି ମାଆର ସେବା କରିବାକୁ ?

କିଏ ଦେଶଦ୍ରୋହୀ ?

ଶରତ : (ଅସୀମାର ଓଠରେ ହାତମାରି) ତୁମ ମୁହଁରେ କ୍ରୋଧ ନୁହଁ, ଲଜ୍ଜା ଶୋଭାପାଏ ମିସ୍ ମହାପାତ୍ର। ଯିଏଲି ତୁମ ପରି ସୁନ୍ଦରୀଙ୍କ ମୁହଁରେ ଲଜ୍ଜାର ଶୋଭା ଅନନ୍ୟ, ଅନୁପମ।

ଅସୀମା : (ଘୁଞ୍ଚିଯାଇ) ସାବଧାନ, ମୋ ଦେହରେ ହାତ ଦିଅନା।

ସୁନିଲ : ଏସବୁ କ'ଣ ହେଉଛି ? ତମେ ସବୁ ସାମାନ୍ୟ ସୌଜନ୍ୟ ଭୁଲି ଯାଉଛ।

ଆଲୋକ : ତମେ ସବୁ ନା ଏ ଦେଶ ପ୍ରତି ଅନୁରକ୍ତ ନା ସେ ଦେଶ ପ୍ରତି ଅନୁରକ୍ତ ? ତମେ ସବୁ ପରମ ସୁବିଧାବାଦୀ।

ମଦନ : ଆମ ଦେଶ ସରକାରଙ୍କ ଷ୍ଟାଇପେଣ୍ଡ୍ ପାଇ ପାଠପଢ଼ି ସେ ଦେଶକୁ ପଇସା ଛାଣିଲ।

ଅସୀମା : ବିଦେଶ ଯିବାଟା କ'ଣ ଅନ୍ୟାୟ ନା ସେଠି ଚାକିରି କରିବାଟା ପାପ ?

ଆଲୋକ : ସେକଥା ତୁମ ଡାଡିଙ୍କୁ ପଚାର। ଏ ପ୍ରଶ୍ନର ଉତ୍ତର ତାଙ୍କ ପାଖରେ ଅଛି।

ସୁନିଲ : ଦେଶ, ବିଦେଶ କଥା ଉଠାଇ ତୁମେ ପ୍ରକୃତ କଥାକୁ ଆଡ଼େଇ ଯିବାକୁ ଚେଷ୍ଟା କରୁଛ।

ଶରତ : ପ୍ରକୃତ କଥାଟା ପୁଣି କ'ଣ ?

ସୁନିଲା : ତୁମେ ପରା ମୋ ଘର, ଜମିବାଡ଼ି ବିଷୟ ମହେନ୍ଦ୍ର ବିଶ୍ୱାଳ ସହିତ କଥାବାର୍ତ୍ତା କରିବାକୁ ଯାଇଥିଲ।

ଆଲୋକ : ଯାଇଥିଲୁ। କଣ ହେଲା ?

ସୁନିଲ : ସିଏ କ'ଣ କହିଲା ?

ମଦନ : ଯାହା କହିଲେ ଠିକ୍ କହିଲେ।

ଅସୀମା : କ'ଣ କହିଲେ ?

ଶରତ : ସେ କଥା ତୁମକୁ ଜଣାଇବାକୁ ଆମେ ବାଧ୍ୟ ନୁହଁ।

ସୁନିଲ : ସିଏ ମୋ ଘର, ଜମିବାଡ଼ି ଛାଡ଼ିବ ନା ନାହିଁ ?

ଆଲୋକ : ତାକୁ ନିଜେ ଯାଇ ପଚାର।

ସୁନିଲ : ତୁମେସବୁ ତାକୁ ପଚାରିବାକୁ ଯାଇଥିଲ, ସିଏ ତୁମକୁ ନିଶ୍ଚୟ କହିଥିବ ?

ମଦନ : ତୁମେ ନିଜକୁ ଖୁବ୍ ଚାଲାକ୍ ବୋଲି ଭାବ ଆମର ସେଥିରେ

କିଛି ଆପତ୍ତି ନାହିଁ। କିନ୍ତୁ ଅନ୍ୟ ସମସ୍ତଙ୍କୁ ଏତେ ବୋକା ବୋଲି ଧରିନେବା ଉଚିତ୍ ନୁହେଁ।

ସୁନିଲ : ମୁଁ ତ କାହାକୁ କେବେ ବୋକା ବୋଲି ଭାବି ନାହିଁ।

ଶରତ : ଭାବି ନାହିଁ ?

ସୁନିଲ : ନା।

ଆଲୋକ : ତାହେଲେ ତୁମେ କେମିତି ଧରିନେଲ ଯେ ଆମେ ତୁମ ପାଇଁ ମହେନ୍ଦ୍ର ବିଶ୍ୱାଳ ବିରୁଦ୍ଧରେ ଲଢ଼ି ତୁମ ଘରଦ୍ୱାର ତା ହାତରୁ ଛଡ଼ାଇ ଆଣି ତୁମ ହାତରେ ଦେବୁ ? ଆଉ ତୁମେ ଏଠି ବସି ଆରାମ କରିବ।

ସୁନିଲ : ମୁଁ ତୁମ ସାହାଯ୍ୟ ମାଗିଥିଲି ଓ ତୁମେ ନିଜ ତରଫରୁ ପ୍ରତିଶ୍ରୁତି ଦେଇଥିଲ ମହେନ୍ଦ୍ର ବିଶ୍ୱାଳ ହାତରୁ ମୋ ଘର, ଜମି ଛଡ଼ାଇ ଆଣି ମୋତେ ଫେରାଇ ଦେବ।

ଅସୀମା : ଏଥିରେ ଆପଣଙ୍କୁ ବୋକା ବନେଇବାର କ'ଣ ଅଛି ? ଏଇଟାତ ସାଧାରଣ ସୌଜନ୍ୟ। ଆପଣମାନେ ଶିକ୍ଷିତ। ଅସହାୟକୁ ସାହାଯ୍ୟ କରିବା ଆପଣମାନଙ୍କ ଉଦାରତା।

ମଦନ : (ହସିଲା) ଅସହାୟ କିଏ ? ତୁମେ ନା ତୁମର ଏ ତାତି ?

ଆଲୋକ : ତୁମ ଡ଼ାଡ଼ି ଜଣେ ଦେଶଦ୍ରୋହୀ ଯିଏ ଆମ ଆଗରେ ଦେଶ ପ୍ରେମୀର ସଫଳ ଅଭିନୟ କରି ଚାଲିଛନ୍ତି।

ସୁନିଲ : ଦେଶଦ୍ରୋହୀ ? କିଏ ଦେଶଦ୍ରୋହୀ ?

ଆଲୋକ : ତୁମେ ଦେଶଦ୍ରୋହୀ, ଗୁପ୍ତଚର।

ସୁନିଲ : (ଚିତ୍କାର କଲେ) ନା, ଏସବୁ ମିଛ, ମିଛ, ମିଛ। ଡ଼ାହା ମିଛ। ତୁମ ମନରେ ମହେନ୍ଦ୍ର ବିଶ୍ୱାଳ ବିଷ ଭର୍ତ୍ତିକରି ଦେଇଛି।

ଶରତ : ତମେ ତ ଏତେ ସାଧୁ, ସଚ୍ଚୋଟ ଲୋକ, ଆମେରିକାରୁ ଡଡା ଖାଇଲ କାହିଁକି ?

ସୁନିଲ : ଡଡା ଖାଇଲି ?

ଅସୀମା : ଏସବୁ ମିଛ କଥା ଆପଣମାନଙ୍କୁ କିଏ କହିଲା ?

ମଦନ : (ଠୋ ଠୋ ହୋଇ ହସିଲା) କିଏ କହିଲା ? (ପୁଣି ହସିଲା) ତମେ ଧରି ନେଇଛ ଆମେ ତ ନିପଟ ମଫସଲରେ ଅଛୁ, ଆମେରିକାରେ ଯାହା ଘଟିଲେ ବି ଆମେ ଜାଣି ପାରିବୁ ନାହିଁ। ସେ ଯୁଗ ଆଉ ନାହିଁ। ତୁମର ସମସ୍ତ ଗୁପ୍ତଗ୍ରମର

ଆମର ହସ୍ତଗତ ହୋଇଛି ।

ସୁନିଲ : ପାଶପୋର୍ଟ, ଭିସା ଦେଖିଲେ ତ ତୁମର ସମସ୍ତ ସନ୍ଦେହ ଦୂରହେବ ? ଟିକେ ଅପେକ୍ଷା କର ମୁଁ ମୋ ବାକ୍ସ ଖୋଲି ତୁମକୁ ଦେଖାଉଛି ।

ଶରତ : ରଖ ହେ ତୁମ ପାଶପୋର୍ଟ, ଭିସା । ଟଙ୍କା ଖର୍ଚ୍ଚ କଲେ ସେମିତିଆ ଜାଲ ପାଶପୋର୍ଟ, ଭିସା ଯେ କେହି ଯୋଗାଡ଼ କରିପାରିବ । ଆଜିକାଲି ଜାଲ ଟଙ୍କା ଛପାଇ ହେଉଛି, ପାଶପୋର୍ଟ, ଭିସା କଥା କିଏ ପଚାରେ ।

ଆଲୋକ : ତୁମେ ଆମେରିକାରୁ ଭାରତକୁ ସିଧା ଆସିଛ ନା, ଅନ୍ୟ କେଉଁ ଦେଶକୁ ଯାଇଥିଲ ? ମାନେ ଆମେରିକା ବ୍ୟତୀତ ତୁମର ଅନ୍ୟ କେଉଁ ଦେଶ ସହିତ ସଂପର୍କ ଅଛି ?

ସୁନିଲ : ମତେ ବିଶ୍ୱାସ କର । ମୋର ଅନ୍ୟ କୌଣସି ଦେଶ ସହିତ କିଛି ସଂପର୍କ ନାହିଁ ।

ମଦନ : ସେ କଥା କଣ ସହଜରେ କିଏ ସ୍ୱୀକାର କରେ ?

ଶରତ : ତୁମ ପାଖରେ ଏ ବ୍ରିଫ୍‌କେଶ୍ ଦୁଇଟା ଛଡ଼ା ଆଉ କଣ ଅଛି ?

ଅସୀମା : ନା, ଆଉ କିଛି ନାହିଁ ।

ଆଲୋକ : ସବୁଦିନ ଭାରତରେ ରହିବ ନା ଅନ୍ୟ କେଉଁ ଦେଶକୁ ଯିବାର ଯୋଜନା ଅଛି ?

ସୁନିଲ : ମୁଁ ଏଇ ଆମ ଗାଆଁରେ ସବୁଦିନ ରହିବା ପାଇଁ ନିଷ୍ପତ୍ତି ନେଇ ଭାରତ ଆସିଛି ।

ମଦନ : ପାଖରେ କିଛି ଅସ୍ତ୍ରଶସ୍ତ୍ର ଅଛି ?

ସୁନିଲ : ଅସ୍ତ୍ରଶସ୍ତ୍ର ?

ମଦନ : ରିଭଲଭର୍ କି ସେଇ ପ୍ରକାର ଆଉ କିଛି ?

ସୁନିଲ : ନା,ମୋ ପାଖରେ ସାମାନ୍ୟ ଛୁରୀ ଖଣ୍ଡେ ବି ନାହିଁ ।

ଆଲୋକ : ତୁମର କୋଉ କୋଉ ଦେଶରେ ବ୍ୟାଙ୍କବାଲାନ୍ସ ଅଛି ?

ସୁନିଲ : କେବଳ ଆମେରିକା ବ୍ୟତୀତ ଅନ୍ୟ କୌଣସି ଦେଶରେ ମୋର ବ୍ୟାଙ୍କ ଆକାଉଣ୍ଟ୍ ନାହିଁ । ମୁଁ ବ୍ୟବସ୍ଥା କରିକି ଆସିଛି, ଖୁବ୍ ଶୀଘ୍ର ମୋର ସମସ୍ତ ଜମା ଭାରତୀୟ ବ୍ୟାଙ୍କକୁ ଟ୍ରାନ୍ସଫର ହୋଇ ଆସିବ ।

ଆଲୋକ : ଏସବୁ ବାଜେ କଥା ଆମେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହଁ ।

ଶରତ : ତୁମ ବ୍ରିଫ୍‌କେଶ୍ ଦୁଇଟାରେ କ'ଣ ଅଛି ?

ଅସୀମା : ସେଥିରେ କେବଳ ଆମର ପୋଷାକପତ୍ର ଆଉ କାଗଜପତ୍ର ଅଛି ।

ମଦନ : କାଗଜ ନା ଆଉ କିଛି ?

ଅସୀମା : ଆଉ କିଛି ପୁଣି କ'ଣ ?

ଆଲୋକ : ସେ କଥା ପ୍ରଫେସର ମହାପାତ୍ର କହିବେ ।

ସୁନିଲ : ଆମକୁ ବିଶ୍ୱାସ କରନ୍ତୁ । ତା ଭିତରେ କେବଳ ପୋଷାକପତ୍ର ଆଉ ଦରକାରୀ କାଗଜ, ବହି, ପାଶପୋର୍ଟ, ଭିସା ଅଛି । ସେଥିରେ ଆପତ୍ତିଜନକ ଜିନିଷ କିଛି ନାହିଁ ।

ମଦନ : ଆମର କିନ୍ତୁ ସନ୍ଦେହ ହେଉଛି, ବ୍ରିଫକେଶ୍ ଭିତରେ ଅନେକ ଆପତ୍ତିଜନକ ଜିନିଷ ଅଛି ।

ଆଲୋକ : କାହା କଥା ଉପରେ ଆମର ବିଶ୍ୱାସ ନାହିଁ । ବ୍ରିଫ୍‌କେଶ ଦୁଇଟାର କିଇ ଦିଅ । ଆମେ ନିଜେ ଭେରିଫାଏ କରିବୁ ।

ଅସୀମା : ନା, ବ୍ରିଫ୍‌କେଶ୍‌ର କିଇ ମୁଁ କାହାକୁ ଦେଇ ପାରିବି ନାହିଁ ।

ମଦନ : ଦେବ ନାହିଁ ? କ'ଣ କହିଲ ଦେବ ନାହିଁ ? (ତିନିଜଣଯାକ ହୋ-ହୋ ହୋଇ ହସିଲେ)

ଶରତ : ମୁଁ ୱାନ୍, ଟୁ, ଥ୍ରି ଗଣିବା ଭିତରେ ତୁମେ ଯଦି କିଇ ନଦିଅ, ତା ହେଲେ ବ୍ରିଫ୍‌କେଶ୍ ଦୁଇଟା ଭାଙ୍ଗି ଦିଆଯିବ । ମୁଁ କାଉଁଟିଂଙ୍ଗ ଷ୍ଟାର୍ଟ କଲି - ୱାନ୍ ।

ସୁନିଲ : ଚାବି କାଠି ଦେଇଦେ ଅସୀମା ।

ଅସୀମା : ନା, ମୁଁ ଦେବି ନାହିଁ ।

ଶରତ : ଟୁ ......

ସୁନିଲ : ସେମାନେ ଆମ ବ୍ରିଫ୍‌କେଶ୍ ଭାଙ୍ଗିଦେବେ । ଦେଇ ଦେ ।

ଆଲୋକ : ଦବନା ନାହିଁ ।

ସୁନିଲ : ଦେଇ ଦେ ।

ଅସୀମା : ହଉ, ନିଅ । (ଆଲୋକ ଅସୀମା ହାତରୁ ଚାବି କାଠିଟା ଝୁଂପି ନେଲା ଓ ମଦନ ହାତକୁ ଚାବି କାଠିଟା ଥ୍ରୋ କଲା । ମଦନ ଗୋଟେ ବ୍ରିଫ୍‌କେଶ୍ ଖୋଲିଲା ।)

ଅସୀମା : ଖବରଦାର, ମୋ ଜିନିଷ କିଛି ଫିଙ୍ଗା ଫୋପଡ଼ା କରିବ ନାହିଁ ।

ଶରତ : ତୁମେ ଚୁପ୍‌ଚାପ୍ ଠିଆ ହୁଅ ମିସ୍ ମହାପାତ୍ର । ଆମ କାମ

ଆମେ କରୁଛୁ । (ମଦନ ବ୍ରିଫ୍‌କେଶ୍ ଭିତରୁ ପୋଷାକପତ୍ର ବାହାର କରି ଏଣେ ତେଣେ ଫିଙ୍ଗିଲା । ଅସୀମା ବୁଲିବୁଲି ସେସବୁ ଗୋଟାଇଲା ।)

ଆଲୋକ : ସବୁଯାକ ଲୁଗା କାଢ଼ିପକା, ତା ତଳେ ନିଶ୍ଚୟ କିଛି ଥିବ ।

ମଦନ : ନା, କିଛି ମିଳୁ ନାହିଁ ।

ଆଲୋକ : ଶରତ ଦେଖିଲୁ ସେ ଲୁଗାପଟା ଭିତରେ କିଛି ଚାଲିଗଲା କି ?

ଶରତ : (ଅସୀମାଙ୍କ ହାତରୁ ସବୁ ଲଗାପଟା ଛଡ଼ାଇ ଆଣି ସେସବୁ ଝଡ଼ାଝଡ଼ି କଲା ।)

ଅସୀମା : ଆରେ, ଏସବୁ କ'ଣ ହେଉଛି । ଆରେ ରୁହ ।

ଶରତ : ଯା ଭିତରେ କାଳେ କ'ଣ ରହିଯାଇଥିବ, ଆମକୁ ଭଲ ଭାବରେ ଏସବୁ ଚେକ୍ କରିବାକୁ ପଡ଼ିବ । (କିଛି ପୋଷାକ ଚିରି ପକାଇଲା)

ଅସୀମା : ଆରେ, ଏ କ'ଣ କରୁଛ ? (ତାଙ୍କ ହାତରୁ ଛଡ଼ାଇଲେ)

ଶରତ : (ଅସୀମାଙ୍କୁ ଠେଲିଦେଇଛି) ତମେ ସେ କ'ଣରେ ଠିଆ ହୁଅ । ଆମ କାମରେ ବାଧା ଦେଲେ ଆମେ ତୁମ ଉପରେ ହାତ ଉଠାଇବାକୁ ବାଧ ହେବୁ ।

ସୁନିଲ : ତୁ ଆଉ ସେମିତି ବ୍ୟସ୍ତ ହୋନା ମା । ତୁ ଏଇଠି, ମୋ ପାଖରେ ଠିଆହୋ । ସିଏ ଯାହା କରୁଛନ୍ତି କରନ୍ତୁ । (ଅସୀମାଙ୍କୁ ଟାଣି ନେଇ ତାଙ୍କ ପାଖରେ ଠିଆ କରାଇଲେ । ଅସୀମା ତା ପୋଷାକ ପତ୍ରର ଶୋଚନୀୟ ଅବସ୍ଥା ଦେଖି କାନ୍ଦ କାନ୍ଦ ହେଉଥିଲେ । ସୁନିଲ ତାଙ୍କୁ ବୁଝାଇ ସାନ୍ତ୍ୱନା ଦେଉଥିଲେ ।)

ମଦନ : ନା, ଲୁଗା ତଳେ ଆଉ କିଛି ନାହିଁ ।

ଆଲୋକ : ସେ କଡ଼ରେ କ'ଣ ଅଛି ? (ମଦନ ବ୍ରିଫ୍‌କେଶ୍ ଭିତରୁ ଗୋଟେ ଆମେରିକାନ୍ କ୍ୟାମେରା ଉଠାଇ ଆଣିଲା ।)

ମଦନ : (କ୍ୟାମେରାଟାକୁ ଏପଟ ସେପଟ କରି ଦେଖି) ଏଇଟା ଗୋଟେ କଷ୍ଟଲି ଫରେନ କ୍ୟାମେରା ।

ଶରତ : ଦେ, ମୋ ହାତକୁ ଦେ । (ଶରତ ମଦନ ହାତରୁ କ୍ୟାମେରା ନେଇ କୁବଘର ଓ ସୁନିଲ ଓ ଅସୀମାଙ୍କର ଦୁଇ ତିନିଟା ସ୍ନାପ୍ ନେଲା ।)

ଆଲୋକ : କ୍ୟାମେରାଟା ଆମ କ୍ଲବରେ ରହିବ । ପାର୍ଟି, ପିକନିକ୍, ଡ୍ରାମା ଆଉ ଖେଳ ବେଳକୁ ଏଟା ବଢ଼ିଆ କାମ ଦେବ ।

ଶରତ : ଦେଖ ମଦନ ! ଟା ଭିତରେ ଆଉ କ'ଣ ଅଛି, ଦେଖ । (ମଦନ ବ୍ରିଫ୍‌କେଶଟା ଓଲଟାଇ ଝାଡ଼ି ଦେଲା । କେତେକ କାଗଜପତ୍ର ତଳେ ବିଛି ହୋଇ ପଡ଼ିଲା ।)

ମଦନ : ନା, ଯା ଭିତରେ ଆଉ କିଛି ନାହିଁ । (ଏଣେ ତେଣେ ବିଛି ହୋଇ ପଡ଼ିଥିବା ଜିନିଷ ଗୁଡ଼ିକ ସୁନିଲ ଗୋଟାଇବା ବେଳକୁ ଆଲୋକ ତାଙ୍କ ହାତରୁ ସେ ସବୁ ଛଡ଼ାଇ ନେଇ ତାକୁ ଗୋଟେ ଧକ୍କା ମାରିଲା ।)

ଆଲୋକ : ତୁମକୁ ପରା ମନା କରାଗଲା । ତୁମେ ଆମ କାମରେ ବାଧା ଦେଲେ ପରିଣାମ ଭୟଙ୍କର ହେବ । ଯା, ସେଠି ଚୁପ୍‌ଚାପ ଠିଆ ହୁଅ । (ଆଲୋକ ସୁନିଲକୁ ଠେଲି ଦେଲା । ସୁନିଲ ଅସୀମାଙ୍କ ପାଖକୁ ଗଲେ । ଦୁହେଁ ପରସ୍ପରକୁ ଲାଗି ଭୟରେ ଠିଆ ହେଲେ ।)

ଶରତ : ଆର ବ୍ରିଫ୍‌କେଶଟା ଖୋଲ ମଦନ ।

ମଦନ : ଖୋଲୁଛି । (ମଦନ ବ୍ରିଫ୍‌କେଶ୍ ଖୋଲିଲା ।ପ୍ରଥମେ ଟା ଭିତରୁ ଦୁଇଟା ଶାଲ୍, କିଛି ଶୀତ ଲୁଗା ବାହାର କଲା ।) .

ଆଲୋକ : ଟା ତଳେ ଆଉ କ'ଣ ଅଛି ଦେଖ ।

ଶରତ : (ବ୍ରିଫ୍‌କେଶ୍ ଭିତରେ ହାତ ପୂରାଇ ଗୋଟେ ଛୋଟ ଟେପ୍ ରେକର୍ଡର ବାହାର କରି ଆଣିଲା ।) ଏଇଟା ଗୋଟେ କଷ୍ଟଲି ଇମ୍ପୋଟେଡ୍ ଟେପ୍‌ରେକର୍ଡର ।

ଆଲୋକ : (ଟା ହାତରୁ ଛଡ଼ାଇ ନେଲା) ଦେଖି,ଦେଖି । (ଏପଟ ସେପଟ କରି ଦେଖିଲା) ଖୁବ୍ ଫାଷ୍ଟକ୍ଲାସ ଟେପ୍‌ରେକର୍ଡର ।

ଶରତ : ଲଗାବେ ଗୋଟେ କ୍ୟାସେଟ୍ ଲଗା । (କ୍ଲବରେ ଥୁଆ ହୋଇଥିବା କ୍ୟାସେଟ୍ ଭିତରୁ ଗୋଟିଏ ୱେଷ୍ଟର୍ଣ୍ଣ ମିଉଜିକ୍ କ୍ୟାସେଟ୍ ଶରତ ଆଲୋକ ହାତକୁ ବଢ଼ାଇ ଦେଲା । ମ୍ୟୁଜିକ୍ ବାଜିଲା । ଶରତ ଓ ଆଲୋକ ମ୍ୟୁଜିକର ତାଳେତାଳେ ନାଚିବାକୁ ଲାଗିଲେ । କିଛି ସମୟ ପରେ ମଦନ ମଧ ସେମାନଙ୍କ ସହିତ ନାଚିଲା । ଆଲୋକ ଯାଇ ଅସୀମାକୁ ଟାଣିଲା । ସେମାନଙ୍କ ସହିତ ନାଚିବାକୁ ବାଧ୍ୟ କଲା ।)

ଆଲୋକ : ଆସ, ଆସ ମିସ୍ ମହାପାତ୍ର ! ଆରେ ତମେ ଏମିତି ଲାଜ କରୁଚ଼ କ'ଣ ? ଇଏତ ଆମେରିକାନ ମିଉଜିକ୍ । ତମେ ତ ଆମେରିକାରେ ଢ଼େର ନାଚିଥିବ । ଏଠି ଆମ ସାଙ୍ଗରେ ନାଚ଼ିବାକୁ ଏମିତି ସଂକୋଚ କରୁଚ଼ କ'ଣ ? କ'ଣ ଆମ ସାଙ୍ଗରେ ନାଚିବାକୁ ତୁମର ପସନ୍ଦ ହେଉନାହିଁ ?

(ଅସୀମା ଟାଣି ହେଲେ ଓ ସୁନିଲଙ୍କୁ କୁଣ୍ଢାଇ ଧରିଲେ)

ଶରତ : (ଟେପ୍ ରେକର୍ଡରଟାକୁ ବନ୍ଦ କରି ଦେଲା) ଆଉ ସେ ନାଚ ସେତିକି ଥାଉ । ରାତି ଅନେକ ହେଲାଣି, ଶୀଘ୍ର କାମ ସାର । ଦେଖ ଆଉ କ'ଣ ଅଛି ?

ମଦନ : (ପୁଣି ବ୍ରିଫ୍‌କେଶ ଭିତର ଘାଂଟି) ଏଇଟା ଗୋଟେ ଡାଇରୀ ।

ଆଲୋକ : (ତା ହାତରୁ ଡାଇରିଟା ନେଇ) ମୁଁ ଭାବୁଛି ଏଇ ଡ଼ାଇରୀରୁ ସବୁ ତଥ୍ୟ ମିଳିଯିବ । ଗୁପ୍ତଚରର ଗୁପ୍ତ ଡାଇରୀ ।

ଶରତ : (ଆଲୋକ ହାତରୁ ଡ଼ାଇରୀଟା ଛଡ଼ାଇ ନେଇ) ଏଥିରେ ନିଶ୍ଚୟ କିଛି ଗୋପନୀୟ ତଥ୍ୟ ରେକର୍ଡ଼ କରାଯାଇଥିବ ।

ସୁନିଲ : ନା, ସେଥିରେ କିଛି ଲେଖା ଯାଇ ନାହିଁ ।

ମଦନ : ହୁଏତ କିଛି ଗୋଟେ ଏଇ..... ମାନେ ଅଦୃଶ୍ୟ କାଳିରେ ଲେଖାଯାଇ ଥିବ ।

ସୁନିଲ : ତୁମେ ସେଥିରୁ କି ତଥ୍ୟ ଖୋଜୁଛ ?

ଶରତ : ଆମେ ଯାହା ଖୋଜୁଛୁ ତୁମେ ତାହା ଭଲ ଭାବରେ ଜାଣିଛ ।

ସୁନିଲ : ମୁଁ କେମିତି ଜାଣିବି ?

ମଦନ : ଦୁଇ, ତିନିଟା ଉତ୍ତମ, ମଧ୍ୟମ ବାଜିଗଲେ ସବୁକଥା ସଫା ସଫା ବାହାରି ପଡ଼ିବ ।

ଅସୀମା : ସିଏ ତୁମର କ'ଣ ଦୋଷ କଲେ ? ତାଙ୍କୁ କାହିଁକି ମାରିବ ?

ଆଲୋକ : କ'ଣ ଦୋଷ କରିଛନ୍ତି, କାଲି ସକାଳେ ପୋଲିସ୍ ଆସିଲେ ଯାଇ ଜଣା ପଡ଼ିବ ।

ମଦନ : ଏତେ କଥାରୁ ଆମକୁ କ'ଣ ମିଳିବ, ତମେ ଆମ କ୍ଲବ ଛାଡ଼ି ଶୀଘ୍ର ବାହାରି ଯା ।

ସୁନିଲ : ଠିକ୍ ଅଛି, ଆମେ କାଲି ସକାଳେ ଚାଲିଯିବୁ ।

ଆଲୋକ : ନା, ଏଇ ବର୍ତ୍ତମାନ ଯିବାକୁ ପଡ଼ିବ ।

ଅସୀମା : ଏତେ ରାତିରେ ଆମେ କୁଆଡ଼େ ଯିବୁ ? କୋଉଠି ରହିବୁ ?

ବାହାରେ ଖୁବ୍ ଶୀତ ପଡୁଛି । ଆମେ ଆଜି ରାତିଟା ଏଇଠି ରହିଯାଇ, କାଲି ମର୍ଣ୍ଣିଙ୍ଗ୍ରୁ ଚାଲିଯିବୁ ।

ମଦନ : ନା, ସେ କଥା ହେଇ ପାରିବ ନେଇଁ । ତୁମେ ଏଇ ସଙ୍ଗେ ସଙ୍ଗେ ଯା ।

ଶରତ : ମଦନ ! ବେ, ସେ ବ୍ରିଫ୍‌କେଶଟା ବାହାରକୁ ଫିଙ୍ଗିଦେ । ତାଙ୍କ ଜିନିଷପତ୍ର ସବୁ ବାହାରକୁ ଫୋପାଡ଼ । କ୍ଲବ ଚାବିପକା ଘରକୁ ଯିବା ।

(ମଦନ, ଶରତ, ଆଲୋକ ତିନିଜଣ ମିଶି ବ୍ରିଫ୍‌କେଶ ଓ ଜିନିଷପତ୍ର ସବୁ ଗୋଟି ଗୋଟିକି ବାହାରକୁ ଫିଙ୍ଗିଲେ । ସୁନିଲ ଓ ଅସୀମା ସେ ଜିନିଷ ତକୁ ଉଠାଇଥିଲେ । ତାଙ୍କୁ ଧକ୍କା ଦେକାମାରି କ୍ଲବଘରୁ ବାହାର କରି ଦେଲେ । ସେମାନେ ଯାଇ ସାରିବା ପରେ ମଦନ, ଶରତ ଓ ଆଲୋକ ଖୁବ୍ ଜୋର୍‌ରେ ହସିଲେ । ସେମାନଙ୍କ ହସର ମାତ୍ରା ବେଳକୁ ବେଳ ବଢ଼ିଲା ।)



# ଷଷ୍ଠ ଦୃଶ୍ୟ

(ରାତି ବାରଟା । ରାତିର ଗର୍ଜନ ଶୁଭୁଛି । ତା ସାଙ୍ଗକୁ ବୁଲା କୁକୁରମାନଙ୍କ ଭୁକିବା ଶବ୍ଦ ଶୁଣାଯାଉଥିଲା । ବ୍ରିଫ୍‌କେଶ ଦୁଇଟି ଧରି ଗାଆଁ ବାଣ୍ଡରେ ଚାଲୁଥିଲେ ସୁନୀଲ ଓ ଅସୀମା ।)

ଅସୀମା : ମୁଁ ଆଉ ଚାଲି ପାରିବି ନାହିଁ ଭାଇ ।

ସୁନିଲ : ଆଉ ଟିକେ ଆଗକୁ ଚାଲ ମା । ଗୋଉରା ଭାଇଙ୍କ ଘର ଆଉ ଅଳ୍ପ ବାଟ ଅଛି ।

ଅସୀମା : କୋଉ ଗୋଉରା ଭାଇ ?

ସୁନିଲ : ପ୍ରଥମେ ଆମେ ଯୋଉ ସାରଙ୍ଗକୁ ଦେଖିଥିଲେ, ତାରି ବାପା ।

ଅସୀମା : ଆମେ ତ ଏତେ ଲୋକଙ୍କ କବାଟ ବାଡ଼େଇଲେ କେହି ଜଣେ ହେଲେ ଆମ ଡ଼ାକ ଶୁଣିଲେ ନାହିଁ କି କବାଟ ଖୋଲିଲେ ନାହିଁ । ସିଏ ଶୁଣିବେ ବୋଲି କୋଉ ନିଶ୍ଚିତତା ଅଛି ?

ସୁନିଲ : ଶେଷ ଚେଷ୍ଟା କରିବା ।

ଅସୀମା : ହଉ ଚାଲ ।

(ଆଗକୁ ଚାଲିଲେ ସୁନିଲ ଓ ଅସୀମା । ଆଗରୁ ଆସୁଛି ସାରଙ୍ଗ । ତା ହାତରେ ଗୋଟିଏ ଲଣ୍ଠନ । ଲଣ୍ଠନ ଆଲୁଅରେ ସାରଙ୍ଗ ଚିହ୍ନିଲା ସେ ଦୁଇ ଜଣଙ୍କୁ ।)

ସାରଙ୍ଗ : ଏତେ ରାତିରେ ?

ସୁନିଲ : କିଏ ସାରଙ୍ଗ ? ଆମେ ବଡ଼ ଅସୁବିଧାରେ ପଡ଼ିଛୁ । ଆଜି ରାତିଟା ଆମକୁ ତୁମ ଘରେ ଆଶ୍ରୟ ଦିଅ । ବାହାରେ ଖୁବ୍ ଶୀତ ।

ସାରଙ୍ଗ : ଆପଣ ପରା କ୍ଲବଘରେ ଥିଲେ ?

ସୁନିଲ : କ୍ଲବପିଲା ଆମକୁ ମାଡ଼ମାରି ଆମ ଜିନିଷ ଛଡ଼ାଇ ନେଇ ଆମକୁ କ୍ଲବଘରୁ ରାତିଟାରେ ବାହାର କରିଦେଲେ ।

ସାରଙ୍ଗ : କ୍ଲବପିଲାମାନେ ଯଦି ଆପଣଙ୍କୁ କ୍ଲବରେ ରଖାଇଦେଲେ ନାହିଁ ତାହେଲେ ଏ ଗାଆଁରେ ତମେ କାହାରି ଘରେ ଅଶ୍ରୟ ପାଇବ ନାହିଁ ।

ଅସୀମା : କାହିଁକି ? ଆମେ ଗାଆଁ ବାଲାଙ୍କର କି ଦୋଷ କଲୁ ?

ସାରଙ୍ଗ : ଆମ ଗାଆଁର ସବୁଲୋକ ମହେନ୍ଦ୍ର ବିଶ୍ଵାଳ କଥାରେ ପରିଚାଳିତ । ମହେନ୍ଦ୍ର ବିଶ୍ଵାଳର ଶତ୍ରୁକୁ ଆଶ୍ରୟ ଦେବାକୁ

କାହାରି ସାହସ କୁଳାଇବ ନାହିଁ । ସିଏ ନାନା ବାଟରେ ହଇରାଣ କରିବ । ଯିଏ ମହେନ୍ଦ୍ର ବିଶ୍ୱାଳର ଶତ୍ରୁ ସିଏ ଗାଆଁର ପ୍ରତ୍ୟେକ ଲୋକର ଶତ୍ରୁ ।

ସୁନିଲ : ମୋ ଜାଣିବାରେ ମହେନ୍ଦ୍ର ବିଶ୍ୱାଳ ଆମ ଗାଆଁର ପ୍ରଧାନ ଶତ୍ରୁ । ତାରି ଯୋଗୁ ଆମ ଗାଆଁର ସବୁ ଗଛ ହଣାହେଇ କଲିକତାରେ ବିକ୍ରି ହେଲା । ଗାଆଁର ପ୍ରାକୃତିକ ପରିବେଶ ନଷ୍ଟ ହୋଇଯାଇଛି । ତା ଫଳରେ ଜଳବାୟୁର ସନ୍ତୁଳନ ନଷ୍ଟ ହୋଇ ଯାଇଛି । ଲୋକମାନେ ନାନା ରୋଗରେ ପଡୁଛନ୍ତି ।

ସାରଙ୍ଗ : ଏକଥା ଆମ ଗାଆଁ ଲୋକଙ୍କୁ କିଏ ବୁଝାଇବ ?

ସୁନିଲ : ଆଉ ଆମ ଗାଆଁ ପାହାଡ଼ ଭାଙ୍ଗି ସିଏ ଯୋଉ ବେପାର କରୁଚି ସେଥିରେ ତାର ସିନା ରୋଜଗାର ବଢୁଛି, କିନ୍ତୁ ଲୋକମାନଙ୍କର ରୋଗ ବଢୁଛି । ପଥରଗୁଣ୍ଡ ପବନରେ ଉଡ଼ି ଲୋକଙ୍କ ନିଃଶ୍ୱାସରେ ପଶି ଲୋକମାନଙ୍କ ଛାତି ରୁନ୍ଧି ପକାଉଛି । ଅନେକ ଲୋକଙ୍କୁ ଶ୍ୱାସ ନହେଲେ ଯକ୍ଷ୍ମା ରୋଗ ଧରୁଛି । ତୁମ ବାପା ପରା ଯକ୍ଷ୍ମା ରୋଗ ଭୋଗୁଛନ୍ତି ?

ଅସୀମା : ଲୋକମାନେ ଏକାଠି ବସି ଯାର କିଛି ପ୍ରତିକାର ନ କଲେ ତାର ବିଷମୟ ଫଳ ସମସ୍ତଙ୍କୁ ଭୋଗିବାକୁ ପଡ଼ିବ ।

ସାରଙ୍ଗ : ସବୁ ଜାଣି ମଧ ଆମେ ନିରୁପାୟ ।

ସୁନିଲ : ଗାଆଁ ଲୋକମାନଙ୍କୁ ଏକଥା ବୁଝାଇ ସେମାନଙ୍କୁ ଏକଜୁଟ୍ କରିବାକୁ ପଡ଼ିବ । ନଷ୍ଟ ହୋଇଯାଉଥିବା ପରିବେଶକୁ ରକ୍ଷା କରିବାକୁ ପଡ଼ିବ ।

ସାରଙ୍ଗ : କିନ୍ତୁ କିଏ କରିବ ?

ସୁନିଲ : ମୁଁ କରିବି ।

ସାରଙ୍ଗ : ସିଏ ତ ଆପଣଙ୍କୁ ଏ ଗାଆଁରେ ରଖାଇ ଦେବନାହିଁ, ଆପଣ କେଉଁଠି ରହି ତା ବିରୁଦ୍ଧରେ ଲଢ଼ିବେ ?

ସୁନିଲ : କାଲି ସକାଳ ହେଲେ ମୋ ରହିବା ସ୍ଥାନ ମୁଁ ସ୍ଥିର କରିବି । ଆଜି ରାତିଟା ପାଇଁ ତମ ଘରେ ରହିବାକୁ ଅନୁମତି ଦିଅ ।

ସାରଙ୍ଗ : ମୁଁ ନିରୁପାୟ । ମୁଁ ଯଦି ଆମ ଘରେ ଆଶ୍ରୟ ଦିଏ, ତାହେଲେ ପୋଲିସ୍ ମୋତେ ନେଇ ହାଜତରେ ଭର୍ତ୍ତି କରିଦେବ ।

ଅସୀମା : କିନ୍ତୁ କାହିଁକି ? ଆମେ ପୋଲିସ୍‌ର କି ଅପରାଧ କରିଛୁ ?

ସାରଙ୍ଗ : ମୁଁ ଏତେ କଥା ଜାଣିନାହିଁ, କିନ୍ତୁ ଆଜି ରାତି ଦଶଟା ବେଳେ ମହେନ୍ଦ୍ର ବିଶ୍ୱାଳର ଲୋକ ପ୍ରତି ଘରେ କହି ଯାଇଛନ୍ତି ସୁନିଲ

ମହାପାତ୍ର ଓ ତାଙ୍କ ଝିଅ ଏ ଗାଆଁର ଶତ୍ରୁ, ଦେଶର ଶତ୍ରୁ । ତାଙ୍କୁ ଯିଏ ଘରେ ଆଶ୍ରୟ ଦେବ ତାକୁ ପୋଲିସ୍ ଆରେଷ୍ଟ କରିବ ।

ସୁନିଲ : ଏତେ ରାତିରେ କେହି ଜାଣିବାର ସୁଯୋଗ ନାହିଁ । କେବଳ କେଇଘଣ୍ଟା ବିଶ୍ରାମ ନେଇ ଆମେ ପାହାନ୍ତାରୁ ତୁମ ଘର ଛାଡି ଦେବୁ ।

ସାରଙ୍ଗ : ନା । ମହେନ୍ଦ୍ର ବିଶ୍ୱାଳର ଲୋକମାନେ ରାତିସାରା ପହରା ଦେଉଛନ୍ତି, ଆମେ ବର୍ତ୍ତମାନ ଏଠି, କଥାବାର୍ତ୍ତା ହେଉଛେ ଏକଥା ବି ତା ପାଖରେ ରିପୋର୍ଟ ହୋଇ ସାରିଥିବ ।

ସୁନିଲ : ଆମେ ଏତେ ରାତିରେ କୁଆଡ଼େ ଯିବୁ ?

ସାରଙ୍ଗ : ମୁଁ କିଛି ସାହାଯ୍ୟ କରି ପାରିବି ନାହିଁ ।

ସୁନିଲ : ଗୋଉରା ଭାଇକୁ ଟିକେ ଡ଼ାକ ସାରଙ୍ଗ !

ସାରଙ୍ଗ : ସିଏ ରୋଗୀ ଲୋକ, ନିଦରେ ଶୋଇଲେଣି ।
(ସାରଙ୍ଗର ପ୍ରସ୍ଥାନ)

ଅସୀମା : ଆଉ କାହା ଘରକୁ ଯିବା ଡ଼ାଡ଼ି ? ତମର କେହି ରକ୍ତ ସଂପର୍କର ଲୋକ ଗାଆଁ ଭିତରେ ନାହାଁନ୍ତି ?

ସୁନିଲ : ନା । ମୋ ବାପା ତାଙ୍କ ବାପାଙ୍କର ଏକମାତ୍ର ପୁଅ । ମୁଁ ମଧ ମୋ ବାପାଙ୍କର ଏକମାତ୍ର ସନ୍ତାନ ।

ଅସୀମା : ଆମେ ତାହେଲେ ଆଜି ରାତିଟା କୋଉଠି କଟାଇବା ?

ସୁନିଲ : ରାତି ଆସି ବାରଟା ବାଜିଲାଣି । ସାରଙ୍ଗ ଘର ପିଣ୍ଡାରେ ଆଉ କେଇଘଣ୍ଟା ବିଶ୍ରାମ ନେଇଗଲେ ରାତି ପାହିଯିବ ।

ଅସୀମା : ସାରଙ୍ଗଙ୍କ କଥାରୁ ଯାହା ଜଣାଗଲା, ସିଏ ତାଙ୍କ ପିଣ୍ଡାରେ ମଧ ଆମକୁ ରଖାଇ ଦେବେ ନାହିଁ । (ହାଇମାରିଲା) ଏଇଠି ରାସ୍ତା ଉପରେ ଏମିତି ଶୋଇ ପଡ଼ିବା ।

ସୁନିଲ : ରହ ମା, ମୁଁ ତଳେ ଗୋଟେ କ'ଣ ବିଛାଇ ଦିଏ, ନହେଲେ ତଳୁ ଥଣ୍ଡା ବାହାରିବ ।
(ଦୁହେଁ ପୁଣି ବ୍ରିଫ୍‌କେଶ୍ ଖୋଲି ତା ଭିତରୁ ବେଡ଼୍‌ସିଟ ଓ ଶାଲ୍ ବାହାର କଲେ । ବ୍ରିଫ୍‌କେଶକୁ ମୁଣ୍ଡତଳେ ଦେଇ ଶାଲ ଘୋଡ଼ାଇ ହୋଇ ଶୋଇପଡ଼ିଲେ । ମଞ୍ଚ ଧୀରେ ଧୀରେ ଅନ୍ଧକାର ହେଲା ।)



ଆନଂଦ ଚଂଦ୍ର ପତି

# ଶେଷ ଦୃଶ୍ୟ

(ସମୟ ସକାଳ । ଦାଣ୍ଡରେ ଶୋଇଥିବା ସୁନିଲ ଓ ଅସୀମାଙ୍କ ଉପରେ ଖରା ପଡ଼ିଛି । ତଥାପି ସେମାନଙ୍କ ନିଦ ଭାଙ୍ଗି ନାହିଁ । ଗାଆଁ ଦାଣ୍ଡରେ ପୋଲିସ୍ ଇନିସ୍‌ପେକ୍ଟର, କନେଷ୍ଟବଲ୍, ମହେନ୍ଦ୍ର ବିଶ୍ୱାଳ ଓ କ୍ଲବପିଲା ଚାଲିଛନ୍ତି ସୁନିଲ ଓ ଅସୀମାଙ୍କ ଅନୁସନ୍ଧାନରେ ।)

ପୋ.ଇ : କାହିଁ, କୁଆଡ଼େ ଗଲା ?

ମହେନ୍ଦ୍ର : ରାତିଟାରେ କୁଆଡ଼େ ଯିବ ସାର୍ ? ଏଇଠି କୋଉଠି ଥିବ ।

ପୋ.ଇ : ସକାଳୁ ଚାଲିଯାଇଥିବ ।

ମହେନ୍ଦ୍ର : ସାର୍, ମୁଁ ଏତେ କଞ୍ଚା କାମ କେବେ କରେ ନାହିଁ । ମୋ ଲୋକମାନେ ତା ଗତିବିଧି ପ୍ରତି କଡ଼ା ନଜର ରଖିଛନ୍ତି । ସିଏ ରାତିରେ ଏ ଗାଆଁ ଛାଡ଼ି କୁଆଡ଼େ ଯାଇନାହିଁ । ସକାଳ ହେଲେ ମଧ ଗାଆଁରୁ ବାହାରି ନାହିଁ ।

ପୋ.ଇ : ତମେ ତାକୁ ଯେତେ ଦୁର୍ବଳ ବୋଲି ଭାବୁଛ, ସିଏ କିନ୍ତୁ ସେତେଟା କମ୍‌ଜୋର ନୁହେଁ । ଆମେରିକା ପରି ଆଡ଼ଭାନ୍ସଡ଼ କଣ୍ଟ୍ରିରେ ଯିଏ ଗୁପ୍ତଚର କାମ କରୁଥିଲା ସିଏ ତମ ଲୋକମାନଙ୍କ ଆଖିରେ ଧୂଳି ଦେବାଟା ସେମିତି କିଛି କଷ୍ଟକାମ ନୁହଁ ।

ଆଲୋକ : ସାର୍ ।

ପୋ.ଇ : କ'ଣ ହେଲା ?

ଆଲୋକ : ସେଇ ଆଗରେ ଦୁଇଟା ଲୋକ କିଏ ଘୋଡ଼େଇହେଇ ଶୋଇବା ପରି ଦିଶୁଛି । ସେମାନେ ହେଇଥିବେ ।

ମହେନ୍ଦ୍ର : ହଁ, ହଁ, ସେଇ ଦିଇଟା । ସେଇ ଦିଇଟା ସାର୍ ।

(ପୋ.ଇ. ସେ ଦିଗକୁ ଆଗେଇଲେ । ତାଙ୍କ ପଛରେ ସମସ୍ତେ ଚାଲିଲେ । ସୁନିଲ ଓ ଅସୀମା ଶୋଇଥିବା ସ୍ଥାନରେ ଠିଆ ହେଲେ ।)

ପୋ.ଇ : (ଶରତ ପ୍ରତି) ଉଠା, ଏମାନଙ୍କୁ ଉଠା ।

ଶରତ : ହୋ ବାବୁ ! ହୋ ବାବୁ ! ଆରେ ଦିନ ଆସି କେତେ

ହେଲାଣି, ଉଠ ହୋ ବାବୁ !

ପୋ.ଇ : ସେମିତି ଭଦ୍ରାମିରେ ଡାକିଲେ ହେବ ନାହିଁ। (ବାଡ଼ିରେ ସେମାନେ ଘୋଡ଼ାଇ ହୋଇଥିବା ଚାଦର ଦୁଇଟା କାଢ଼ିଦେଲେ) ଉଠ । ଆରେ ଉଠୁଚନା, ଦେଖିବ ଏଇନେ । ଶଳା ରାସ୍ତା ମଝିଟାରେ ଆରାମରେ ଶୋଇଗଲେ । (ପିଟିବା ପାଇଁ ବାଡ଼ି ଉଚ୍ଚାଇଲା ବେଳକୁ ସୁନିଲ ହାଇମାରି ନିଦରୁ ଉଠିଲେ ।)

ମହେନ୍ଦ୍ର : ଦିନଟାରେ ଏତେ ନିଦ ନା ପୋଲିସକୁ ଦେଖି ନିଦର ଅଭିନୟ ? ମରଣକାଳେ ନିଦ୍ରା ଗଲେ ଯମ କି ଛାଡ଼ି ଦେବ ଭଲେ ?

ପୋ.ଇ : ଆପଣଙ୍କ ନାମ ?

ସୁନିଲ : ସୁନିଲ ମହାପାତ୍ର । ଉଠ୍ ଅସୀମା ।

ଅସୀମା : (ହାଇମାରି ଉଠିଲା ।) ଉଁ..... ଉଁ.... ଓଃ (ଭିଡ଼ି ମୋଡ଼ି ହେଲା) ଏତେ ଖରାପଡ଼ି ଗଲାଣି ?

ସୁନିଲ : ଦେଖି କିଏ ଆସିଛନ୍ତି ।

ଅସୀମା : କାଇଁ କିଏ ?

ପୋ.ଇ : ଆପଣ ମିସ୍ ଅସୀମା ମହାପାତ୍ର ?

ଅସୀମା : ହଁ । କିନ୍ତୁ.....

ପୋ.ଇ : ମୁଁ ଏ ଅଞ୍ଚଳର ପୋଲିସ୍ ଇନସ୍‌ପେକ୍ଟର ।

ଅସୀମା : ସେ କଥା ତ ଆପଣଙ୍କ ୟୁନିଫର୍ମରୁ ଜଣାପଡ଼ିଛି । କିନ୍ତୁ ଏଠି ଆପଣଙ୍କର କି କାମ ?

ପୋ.ଇ : ଅଛି ମିସ୍ ମହାପାତ୍ର । କିଛି କାମ ନଥିଲେ ପୋଲିସ୍ କୁଆଡ଼େ ଗୋଡ଼ କାଢ଼ି ଯାଏନା ।(ଏହି ସମୟରେ ଆଲୋକ ଗୋଟିଏ କାଠ ଚୋଉକି ମୁଣ୍ଡରେ ମୁଣ୍ଡେଇ ଆଣି ରୁମାଲ୍‌ରେ ପୋଛି ଥୋଇଲା ।)

ମହେନ୍ଦ୍ର : ବସନ୍ତୁ ସାର୍ ।

ପୋ.ଇ : (ଚେୟାରରେ ବସି) ଠିକ୍ ଅଛି । ମିଷ୍ଟର ମହାପାତ୍ର ଆପଣ ଆମ ଶତ୍ରୁଦେଶ ପାଇଁ ଗୁପ୍ତଚର କାମ କରୁଥିବା ଅଭିଯୋଗରେ ମୁଁ ଆପଣଙ୍କୁ ଆରେଷ୍ଟ କରୁଛି । ରାମ ଶରଣ । (କନେଷ୍ଟବଲ୍ ରାମ୍ ଶରଣ ଗୋଟେ ହ୍ୟାଣ୍ଡକପ୍ ଧରି

ସୁନିଲଙ୍କ ଆଡକୁ ଆଗେଇଗଲା ।)

ସୁନିଲ : ମୁଁ ଗୁପ୍ତଚର ବୋଲି ଆପଣଙ୍କ ପାଖରେ କି ପ୍ରମାଣ ଅଛି ?

ପୋ.ଇ : ମୋର ସନ୍ଦେହ ହେଉଛି ।

ସୁନିଲ : ସନ୍ଦେହ କରିବାର ତ କିଛି କାରଣ ଥିବ ?

ପୋ.ଇ : ମୁଁ ଯାହା ଖବର ପାଇଛି ଆପଣ ଆଜିକି ତିରିଶ ବର୍ଷ ହେଲା ଆମେରିକାରେ ଥିଲେ । ଏକଥା କ'ଣ ସତ ନୁହେଁ ?

ସୁନିଲ : ସତ ।

ପୋ.ଇ : ଏତେ ବର୍ଷ ପରେ ଏମିତି ହଠାତ୍ କାହିଁକି ଗାଆଁକୁ ଫେରିଲେ ?

ସୁନିଲ : ଏଇଟା ମୋ ନିଜ ଗାଁ, ଜନ୍ମମାଟି । ନିଜ ଗାଆଁକୁ ଜଣେ ଫେରିଲେ ତାକୁ କ'ଣ ସେଥିପାଇଁ କାରଣ ଦର୍ଶାଇବାକୁ ପଡ଼ିବ ?

ମହେନ୍ଦ୍ର : ନିଜ ଗାଆଁ ବୋଲି ତୁମର ଆଜି ଏତେ ଦରଦ, କିନ୍ତୁ ଏ ଦରଦ ଗତ ତିରିଶ ବର୍ଷ ଭିତରେ ଦିନଟାଏତ ଆମେ ଦେଖି ନଥିଲୁ ? ମଝିରେ ଥରଟିଏ ସୁଦ୍ଧା ଗାଆଁକୁ ଫେରିନଥିଲ । ଚିଠିପତ୍ର ଖଣ୍ଡିଏ କାହାକୁ କେବେ ଦେଇ ନଥିଲ କି ଗାଆଁ ସହିତ କିଛି ହେଲେ ସଂପର୍କ ରଖି ନଥିଲ ।

ମଦନ : ଆଜି ହଠାତ୍ ଏ ଦରଦ ଆସିଲା କେମିତି ?

ପୋ.ଇ : ନୀରବ ରହିଲେ କାହିଁକି ମିଷ୍ଟର ମହାପାତ୍ର ? ଜବାବ ଦିଅନ୍ତୁ ।

ମହେନ୍ଦ୍ର : ତାଙ୍କ ପାଖରେ କିଛି ଜବାବ ନାହିଁ ସାର୍ । ସିଏ ଦେଶଦ୍ରୋହୀ, ତାଙ୍କୁ ଆପଣ ଆରେଷ୍ଟ କରନ୍ତୁ ।

ସୁନିଲ : ମୁଁ ଆମେରିକା ଯିବାପୂର୍ବରୁ ମୋ ବାପା, ମାଆଙ୍କର ଦେହାନ୍ତ ହୋଇ ସାରିଥିଲା । ମୁଁ ସବୁଦିନ ପାଇଁ ଆମେରିକାରେ ରହିବି ବୋଲି ନିଷ୍ପତ୍ତି ନେଇ ଆମେରିକାର ନାଗରିକତ୍ୱ ଗ୍ରହଣ କରି ସାରିଥିଲି ।

ମହେନ୍ଦ୍ର : ଏଭଳି ବିଶ୍ୱାସଘାତକ, ଆଉ ସ୍ୱାର୍ଥପର ଲୋକ କୌଣସି ଦେଶରେ ରହି ପାରିବ ନାହିଁ । ଏମାନେ ଯାହାର ଖାଇବେ ତାର ତେର କାଟିବେ ।

ଅସୀମା : ଆପଣ ସାଧାରଣ ସୌଜନ୍ୟ ଭୁଲି ଯାଉଛନ୍ତି ।

ପୋ.ଇ : ଆପଣ ଦୟା କରି ଚୁପ କରନ୍ତୁ ମହେନ୍ଦ୍ରବାବୁ । ହଁ,

ସୁନିଲବାବୁ ! ୟୁ ପ୍ରୋସିଡ୍ ଅନ୍ ।

ସୁନିଲ : ନିଉୟର୍କ ସହରରେ ନିଜର ଘରଟିଏ କିଣିବାର ସମସ୍ତ ଯୋଜନା କରି ସାରିଥିଲି । ମୁଁ ଆଉ ଭାରତକୁ ଫେରିବାର ଆଦୌ ସମ୍ଭାବନା ନଥିଲା । କିନ୍ତୁ ଗୋଟେ ଛୋଟ ଘଟଣା ମୋ ନିଷ୍ପତ୍ତିକୁ ସଂପୂର୍ଣ୍ଣ ବଦଳାଇ ଦେଲା ।

ମହେନ୍ଦ୍ର : ଛୋଟ ଘଟଣା ନୁହଁ ସାର୍, ଖୁବ ବଡ଼ ଘଟଣା । ସୁନିଲ ମହାପାତ୍ର ସେଠି ଗୁପ୍ତଚର କାମ କରିବାର ଆମେରିକା ସରକାର ଜାଣିପାରି ତାଙ୍କୁ ଆମେରିକାରୁ ବହିଷ୍କାର କଲେ । ତେଣୁ ବାପାକୁ ମଉସା ଡାକି ଭାରତକୁ ପଳେଇ ଆସିଚନ୍ତି ।

ପୋ.ଇ : ଥରେ କହିଲି ତୁମେ ଚୁପ୍ କର । ହଁ, ତାପରେ କ'ଣ ହେଲା ମିଷ୍ଟର ମହାପାତ୍ର ?

ସୁନିଲ : ସେଇ ଘରର ଆଗ୍ରିମେଣ୍ଟ ସ୍ୱାକ୍ଷର କରିବା ପାଇଁ ନିଉୟର୍କ ଯିବା ବାଟରେ ରାସ୍ତାରେ ଗୋଟିଏ କଟେଜ ଦେଖି ମୁଁ ଅଟକି ଗଲି । କଟେଜ୍‌ଟି ଥିଲା ଆମ ଗାଆଁଘର ପରି ସୁନ୍ଦର । ମାଟି କାନ୍ଥ, ଚାଳ ଛପର । ସେଇ କଟେଜ ଭିତର ଦେଇ ଆମ ଘର ଆଉ ଆମ ଗାଆଁ ମୋ ପାଖକୁ ଉଡ଼ିଆସି ଆସିଲା । ଗାଆଁ ମାଟିର ଆକର୍ଷଣ ମତେ ଅସ୍ଥିର କଲା । ଆମେରିକା ଖୁଣ୍ଟିରୁ ମୋ ପଘା ଛିଣ୍ଡିଗଲା, ଆମେରିକା ମାଟିରୁ ମୋ ପାଦ ଉଠିଗଲା ।

ମହେନ୍ଦ୍ର : ଏଇଟା ଗୋଟେ ମନଗଢ଼ା ଗଳ୍ପ ।

ଶରତ : ଏଥିରେ କିଛି ହେଲେ ସତ୍ୟତା ନାହିଁ । ମୁଁ ଇଚ୍ଛା କଲେ ଏମିତି କାଳ୍ପନିକ ଗଳ୍ପରୁ ତଜନେ କହିପାରିବି ।

ପୋ.ଇ : ଆପଣମାନେ ଚୁପ୍‌ଚାପ୍ ଠିଆ ହୁଅନ୍ତୁ । ଆପଣମାନଙ୍କୁ ମୁଁ ଯେତେବେଳେ ପଚାରିବି ସେତେବେଳେ ଯାହା କହିବା କଥା କହିବେ । ହଁ, ତାପରେ କ'ଣ ହେଲା କୁହନ୍ତୁ ମିଷ୍ଟର ମହାପାତ୍ର । କ୍ୟାରିଅନ ।

ସୁନିଲ : ଆମେରିକାର ଲୋକମାନେ ପାଶ୍ଚାତ୍ୟ ସଭ୍ୟତାର ପ୍ରାଚୁର୍ଯ୍ୟ, ଆଭିଜାତ୍ୟ, କୋଳାହଳ ଓ ପ୍ରଦୂଷଣ ଭରା ପରିବେଶ ପ୍ରତି ବିତସ୍ପୃହ ହୋଇ ସହରଠାରୁ ଅନେକ ଦୂରରେ କୋଟିକୋଟି ଟଙ୍କା ଖର୍ଚ୍ଚ କରି ପ୍ରାକୃତିକ ପରିବେଶ ସୃଷ୍ଟି କରି ତା ଭିତରେ

କଟେଜ କରି ରହିବାକୁ ପସନ୍ଦ କରୁଛନ୍ତି । ମୁଁ ତେଣୁ ଭାବିଲି ମୋ ଗାଆଁର ଶାନ୍ତ,ସବୁଜ, ପାହାଡ଼, ଝରଣା ଘେରା ପ୍ରଦୂଷଣ ମୁକ୍ତ ପ୍ରାକୃତିକ ପରିବେଶରେ ନ ରହିବି କାହିଁକି ?

ଅସୀମା : ଆମେରିକାରେ ରହି ରହି ମତେ ବିରକ୍ତ ଲାଗୁଥିଲା । ଡାଡିଙ୍କଠାରୁ ଗାଆଁର ପ୍ରାକୃତିକ ପରିବେଶ କଥା ଶୁଣି ଗାଆଁକୁ ଫେରିବାକୁ ତାଙ୍କୁ ପ୍ରବର୍ତ୍ତାଇଲି ।

ସୁନିଲ : ଆମେରିକାରେ ରହି ମୁଁ ଅଜସ୍ର ଟଙ୍କା ରୋଜଗାର କରିଛି । ଅଧିକ ରୋଜଗାର କରିବାର ଶୋଷ ମୋର ମରିଯାଇଛି । ତାଛଡ଼ା ଆମେରିକା ମାଟିରେ ରୋଜଗାର କରିଥିବା ଟଙ୍କାକୁ ସେଠି ସାରା ଜୀବନ ରହି ସେଇ ଆମେରିକାରେ ଖର୍ଚ୍ଚ କରିବା ଅର୍ଥ ଆମେରିକା ଟଙ୍କା ଆମେରିକାକୁ ଫେରାଇ ଦେବା ପରି ହେବ ।

ଅସୀମା : ସେଥିପାଇଁ ଡାଡି ସ୍ଥିର କଲେ ଗାଆଁ ମାଟିକୁ ଫେରିଯିବେ । ଶେଷ ଜୀବନ ଗାଆଁର ପ୍ରାକୃତିକ ପରିବେଶରେ କଟାଇବେ ।

ପୋ.ଇ : ଆପଣ କେବଳ ବାପ ଝିଅ ଆସିଛନ୍ତି । ଆପଣଙ୍କ ସ୍ତ୍ରୀ ଆଉ ପୁଅ କୁଆଡ଼େ ଗଲେ ?

ସୁନିଲ : (ଦୀର୍ଘ ନିଃଶ୍ୱାସ ପକାଇ) ଏଇ ଝିଅ ମାତ୍ର ପାଞ୍ଚବର୍ଷ ବେଳେ ମୋ ସ୍ତ୍ରୀ କର୍କଟ ରୋଗରେ ଚାଲିଗଲେ । ମୋର ପୁତ୍ର ସନ୍ତାନ ନାହିଁ । ଏଇ ମୋର ପୁଅ, ଏଇ ମୋର ଝିଅ ।

ପୋ.ଇ : ମୁଁ ଆପଣଙ୍କ ମନରେ ଆଘାତ ଦେଇଥିବାରୁ ଦୁଃଖିତ ।

ସୁନିଲ : ମୁଁ ଡଡା ଖାଇ ଆମେରକାରୁ ଆସି ନାହିଁ କି ଏଠି ଗୁପ୍ତଚର କାମ କରିବାକୁ ଆସିନାହିଁ । ହେଇ ଦେଖନ୍ତୁ ମୋର ପାଶପୋର୍ଟ ଓ ଭିସା । (ପୋ.ଇ ପାଶ୍‌ପୋର୍ଟ ଓ ଭିସାକୁ ତନଖି କରି ଦେଖିଲେ ।)

ପୋ.ଇ : ଠିକ୍ ଅଛି । (ସୁନିଲ ବାବୁଙ୍କୁ ପାଶପୋର୍ଟ ଓ ଭିସା ଦେଖି ସାରି ଫେରାଇ ଦେଲେ ।)

ସୁନିଲ : କିନ୍ତୁ ଏମିତି ଏକ ସ୍ୱପ୍ନ ବିଭୋର ମନ ନେଇ ଗାଆଁରେ ପହଞ୍ଚି ଦେଖିଲି ସବୁ ଓଲଟି ଯାଇଛି ।

ପୋ.ଇ : କ'ଣ ଓଲଟି ଯାଇଛି ?

ସୁନିଲ : ମୁଁ ନିଉୟର୍କରୁ ଆସି ମୋ ଗାଆଁ ବୋଲି ଯେଉଁଠି ପହଞ୍ଚିଲି

ସେଟା ଗାଆଁ ନୁହଁ କଦର୍ଯ୍ୟ, କଦାକାର ଖଣ୍ଡିଆ ଟାଉନ୍ । ମାଟି କାନ୍ଥ, ଚାଳଛପର, ଲିପାପୋଛା ଚଟାଣର ଘର ସ୍ଥାନରେ ଠିଆ ହୋଇଛି ବିଚିତ୍ର ଘରସବୁ । କାହାର କାନ୍ଥ ମାଟି କିନ୍ତୁ ଛାତ ଆଜବେଷ୍ଟ । ଆଉ କାହାର କାନ୍ଥ ପଥର କିନ୍ତୁ ଛପର ଚାଳ । ଗାଆଁ ଭିତରେ କି ଗାଆଁ ବାହାରେ ଗୋଟିଏ ହେଲେ ଗଛ ନାହିଁ । ମଙ୍ଗଳାପୀଠ, ଭାଗବତ ଘର, ପାହାଡ଼, ଜଙ୍ଗଲ କିଛି ନାହିଁ । କୂଅ, ପୋଖରୀର ପାଣି ଦୂଷିତ । ଗାଆଁର ପ୍ରାକୃତିକ ପରିବେଶ ପୂରା ଧ୍ୱଂସ ପାଇ ଯାଇଛି ।

ଅସୀମା : ଏମିତି ଗୋଟେ ବିଚିତ୍ର ସ୍ଥାନ ଇଏ, ଯାହା ଗାଆଁ ନୁହଁକି ସହର ନୁହଁ ।

ସୁନିଲ : ଏ ଗାଆଁର ପ୍ରାକୃତିକ ପରିବେଶ ଯାହା ମୋର ମୁଖ୍ୟ ଆକର୍ଷଣ ଥିଲା ତାହା ପ୍ରଦୂଷିତ । ବିଶେଷ କରି ଏଠି ଦିନରାତି ପଥର ଭଙ୍ଗା ଚାଲିଥିବାରୁ ପବନଟା ଦୂଷିତ ହୋଇ ଯାଇଛି । ଏବେ ଆମ ଗାଆଁର ଅଧିକାଂଶ ଲୋକ ଯକ୍ଷ୍ମା କିମ୍ବା ଶ୍ୱାସରୋଗରେ ଆକ୍ରାନ୍ତ । ଆମେରିକାରେ ଲୋକମାନେ କୋଟି କୋଟି ଟଙ୍କା ଖର୍ଚ୍ଚ କରି କୃତ୍ରିମ ପଲ୍ଲୀ ତିଆରି ଚାଲିଥିବା ବେଳେ, ଏଠି ସହରି ସଭ୍ୟତା ଗଠନ ନାଆଁରେ ପ୍ରାକୃତିକ ପରିବେଶକୁ ଧ୍ୱଂସ କରି ଦିଆଯାଉଛି ।

ପୋ.ଇ : ମୁଁ ଦୁଃଖିତ ମିଷ୍ଟର ମହାପାତ୍ର ! ମୁଁ ଆପଣଙ୍କୁ ଭୁଲ୍ ବୁଝିଥିଲି । ଆପଣ କିନ୍ତୁ ସଂପୂର୍ଣ୍ଣ ଦୋଷ ମୁକ୍ତ ।

ସୁନିଲ : ଆପଣଙ୍କ ମନରେ ସବୁ ପ୍ରକାର ସଂଦେହ ସୃଷ୍ଟି କରିଛନ୍ତି ଆମ ଗାଆଁର ଏଇ ମହେନ୍ଦ୍ର ବିଶ୍ୱାଳ । ମୁଁ ଗାଆରେ ରହିଲେ ତାଙ୍କ ସ୍ୱାର୍ଥରେ ଆଞ୍ଚ ଆସିବ ବୋଲି ମୋତେ ଗୁପ୍ତଚର ଭାବରେ ସିଏ ଚିତ୍ରଣ କରିଛନ୍ତି । ମୋର ସମସ୍ତ ଜମିବାଡ଼ି, ଘରଦ୍ୱାର ଆଜିକୁ କୋଡ଼ିଏ ବର୍ଷହେଲା ଜବର ଦଖଲ କରୁଛନ୍ତି । ମୋ ଘରେ ସିଏ ମଦଭାଟି ଖୋଲିଛନ୍ତି ।

ମହେନ୍ଦ୍ର : ଏସବୁ ମିଛ କଥା ସାର୍ । ମୁଁ ତାଙ୍କର ସବୁ ସଂପତ୍ତି ତାଙ୍କ ବାପାଙ୍କଠାରୁ କିଣିଛି ।

ପୋ.ଇ : ଠିକ୍ ଅଛି, ଆପଣ ଯଦି କିଣିଛନ୍ତି ତାହେଲେ ବିକ୍ରିଖରିଦ କାଗଜପତ୍ର ଦେଖାନ୍ତୁ ।

ମହେନ୍ଦ୍ର : ମୁଁ କାଗଜପତ୍ର କୋର୍ଟରେ ଦେଖାଇବି ।

ପୋ.ଇ : ସେ ଫାଜିଲାମି ଛାଡନ୍ତୁ । ଏଥିରୁ ଜଣା ପଡ଼ିଲା ଆପଣଙ୍କ ପାଖରେ କିଛି କାଗଜପତ୍ର ନାହିଁ । ମିଷ୍ଟର ମହାପାତ୍ରଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଆପଣ ତାଙ୍କର ସମସ୍ତ ସଂପତ୍ତି ଜବର ଦଖଲ କରିଛନ୍ତି ।

ଅସୀମା : କାଲି ରାତିରେ ଆମକୁ କେହି ଯେପରି ଘରେ ଆଶ୍ରୟ ନଦେବେ ତାର ବ୍ୟବସ୍ଥା ମଧ କରିଥିଲେ । ତାଙ୍କରି କଥାରେ ପଡ଼ି ଏଇ କ୍ଳବ ପିଲାମାନେ ଆମ ଉପରେ ଅତ୍ୟାଚାର କରି (ଝାଡ଼ି ପକାଇ) ରାତି ବାରଟାରେ କ୍ଳବରୁ ବାହାର କରିଦେଲେ । ଆମ ବାକ୍ସ ଖୋଲି କ୍ୟାମେରା, ଟର୍ଚ୍ଚ, ଟେପ୍‌ରେକର୍ଡର ସବୁ ଛଡ଼ାଇ ନେଇଛନ୍ତି । ଆମ ପ୍ରତି ଅଶାଳୀନ ଆଚରଣ କରିଛନ୍ତି ।

ଆଲୋକ : ନାଇଁ ସାର୍, ଆମେ କିଛି କରିନାହୁଁ ।

ଅସୀମା : ଦେଖନ୍ତୁ ସାର୍, ମୋ ଡ୍ରେସ୍‌ର ଅବସ୍ଥା ଦେଖନ୍ତୁ । ମୋ ଡାଡିଙ୍କ ସାର୍ଟକୁ ମଧ ଦେଖନ୍ତୁ ।

ପୋ.ଇ : ମହେନ୍ଦ୍ରବାବୁ ! ମୁଁ ଆପଣଙ୍କୁ ସୁନିଲବାବୁଙ୍କ ସଂପତ୍ତି ଜବର ଦଖଲ ଓ ତାଙ୍କ ନାଆଁରେ ଥାନାରେ ମିଥ୍ୟା ରିପୋର୍ଟ କରିଥିବା ଅପରାଧରେ ଆରେଷ୍ଟ କରୁଛି । ରାମଶରଣ !

ରାମଶରଣ : ସାର୍ ।

ପୋଇ. : ପକା ହ୍ୟାଣ୍ଡ କପ୍ ।

ମହେନ୍ଦ୍ର : ମତେ କ୍ଷମା କରନ୍ତୁ ସାର୍, ମୁଁ ତାଙ୍କର ସବୁ ସଂପତ୍ତି ତାଙ୍କୁ ଫେରାଇ ଦେବି ।

ପୋ.ଇ : ନା, ମୁଁ ସେସବୁ କିଛି ଶୁଣିବି ନାହିଁ । ଆପଣଙ୍କ ପରି ଦୁର୍ଦ୍ଧାନ୍ତ ଲୋକଙ୍କୁ ଦଣ୍ଡ ମିଳିବା ଦରକାର ।

ମହେନ୍ଦ୍ର : (ପୋ.ଇଙ୍କ ଗୋଡ଼ ଧରି) ମତେ ଏଇ ଥରକ ଛାଡ଼ି ଦିଅନ୍ତୁ ସାର ।

ପୋ.ଇ : ରାମଶରଣ ।

ରାମଶରଣ : ସାର୍ ।

ପୋ.ଇ : ଚାହିଁଛୁ କ'ଣ ? ପକା ହ୍ୟାଣ୍ଡ କପ୍ ।

ରାମଶରଣ : ସାର୍ (ମହେନ୍ଦ୍ର ବିଶ୍ୱାଳକୁ ଆରେଷ୍ଟ କରିଛି)

ପୋ.ଇ : ଆଚ୍ଛା, ମିଷ୍ଟର ମହାପାତ୍ର ! ଏ କ୍ଲବପିଲାମାନେ କେବଳ ଆପଣଙ୍କ ଜିନିଷପତ୍ର ଛଡ଼ାଇ ନେଇଛନ୍ତି ନା ମାରଧର ବି କରିଛନ୍ତି ?

ଅସୀମା : (କାନ୍ଦି ପକାଇଲେ)

ପୋ.ଇ : କୁହନ୍ତୁ ମିସ୍ ମହାପାତ୍ର କ୍ଲବ ପିଲାମାନେ କ'ଣ ଆପଣଙ୍କ ପ୍ରତି....

ଅସୀମା : ମୋତେ ଆଉ ମୋ ଡ୍ରାଡ଼ିଙ୍କୁ ଏଇ କ୍ଲବପିଲାମାନେ କାଲି ରାତିରେ ନାନା ଭାବେ ଟରଚର କରିଛନ୍ତି । ଆମ ଖାଇବା ପତ୍ରକୁ ପାଦରେ ଦଳି ଦେଇଛନ୍ତି, ମୋତେ ଟଣା ଓଟରା କରି ତାଙ୍କ ସହିତ ବ୍ରେକ୍ ଡ୍ୟାନ୍ସ କରିବାକୁ ବାଧ କରିଛନ୍ତି । (ଆଉ କିଛି କହି ନ ପାରି କାନ୍ଦି ଉଠିଲେ )

ପୋ.ଇ : (କ୍ଲବ ପିଲାମାନଙ୍କ ଆଡକୁ ଚାହିଁ) ଏକଥା କ'ଣ ସତ ?

ଶରତ : ଆମର ଭୁଲ ହେଇଯାଇଚି ସାର୍ ।

ମଦନ : ଏମିତି ଭୁଲ୍ ଆଉ ଆମେ ମୋଟେ କରିବୁ ନାହିଁ ।

ଆଲୋକ : ଆମେ ତ ତାଙ୍କୁ ସାହାଯ୍ୟ କରିବୁ ବୋଲି ଆମ କ୍ଲବରେ ସ୍ଥାନ ଦେଇଥିଲୁ କିନ୍ତୁ ଏଇ ମହେନ୍ଦ୍ର ବିଶ୍ୱାଳ କଥାରେ ପଡ଼ି ଆମେ ତାଙ୍କ ପ୍ରତି ଏମିତି ଖରାପ ବ୍ୟବହାର ଦେଖାଇଛୁ ।

ମହେନ୍ଦ୍ର : ନାଇଁ ସାର୍ ! ଏସବୁ କରିବାକୁ ମୁଁ ତାଙ୍କୁ କହି ନଥିଲି ।

ପୋ.ଇ : ଆଉ କ'ଣ କରିବାକୁ କହିଥିଲ ?

ମହେନ୍ଦ୍ର : ମୁଁ କେବଳ କହିଥିଲି ତାଙ୍କୁ କ୍ଲବରୁ ବାହାର କରି ଦେବାକୁ ।

ମଦନ : ତମେ କହି ନଥିଲ ସୁନିଲ ମହାପାତ୍ର ଗୁପ୍ତଚର ବୋଲି ?

ମହେନ୍ଦ୍ର : ମୁଁ କ'ଣ କହିଥିଲି ତାଙ୍କ ଜିନିଷପତ୍ର ଛଡ଼ାଇନେଇ ତାଙ୍କ ପ୍ରତି ଅଶାଳୀନ ଆଚରଣ କରିବାକୁ ?

ଆଲୋକ, ମଦନ, ଶରତ : ଆମକୁ ଏଇ ଥରକ ଛାଡି ଦିଅନ୍ତୁ ସାର୍ । ଆମେ ତାଙ୍କର ସବୁ ଜିନିଷ ଫେରାଇଦେବୁ ।

ପୋ.ଇ : ପୋଲିସ ପାଖରେ ଦୟା, କ୍ଷମାର ସ୍ଥାନ ନାହିଁ । ଯିଏ ଅପରାଧ କରିବ ତାକୁ ଧରି ନେଇ କଚେରୀରେ ଉପସ୍ଥାପିତ କରିବା ମୋର କାମ । ମୁଁ ତୁମମାନଙ୍କୁ ଚୋରୀ, ବଳାତ୍କାର

ଓ ମାଡ଼ମାରିବା ଅପରାଧରେ ଆରେଷ୍ଟ କରୁଛି । ରାମଶରଣ !

ରାମଶରଣ : ସାର୍ ।

ପୋ.ଇ : ଏ ତିନି ଜଣଙ୍କୁ ଆରେଷ୍ଟ କର ।

ରାମଶରଣ : (ମଦନ, ଆଲୋକ ଓ ଶରତକୁ ଆରେଷ୍ଟ କଲେ)

ସୁନିଲ : ମୋର କିନ୍ତୁ ଗୋଟିଏ ଅନୁରୋଧ ।

ପୋ.ଇ : ଯାହା କହିବାର ଅଛି କୁହନ୍ତୁ । ଏମାନଙ୍କୁ ଏକାଠି ବାନ୍ଧି ଗାଆଁ ଦାଣ୍ଡରେ ଚଲାଇ ଚଲାଇ ନେବା କଥା କହୁଛନ୍ତି କି ? ଠିକ୍ ଅଛି ଆପଣଙ୍କ କଥା ଅନୁସାରେ ମୁଁ ସେୟା କରିବି ।

ସୁନିଲ : ନା, ମୁଁ ସେ କଥା କହୁନାହିଁ ।

ପୋ.ଇ : ଆଉ ତାହେଲେ ଆପଣ କ'ଣ କହିବାକୁ ଚାହୁଛନ୍ତି ।

ସୁନିଲ : ସେମାନେ ତାଙ୍କର ଭୁଲ ସ୍ୱୀକାର କଲେଣି । ଆପଣ ସେମାନଙ୍କୁ କ୍ଷମା ଦିଅନ୍ତୁ ।

ପୋ.ଇ : ନା, ମିଷ୍ଟର ମହାପାତ୍ର ଏମାନେ ଆଦୌ କ୍ଷମାର ଯୋଗ୍ୟ ନୁହଁନ୍ତି । ଆଜି ଏମାନଙ୍କୁ ଛାଡ଼ି ଦେଲେ ଏମାନଙ୍କ ଔଧତ୍ୟ ଓ ଦୌରାତ୍ମ୍ୟ ବହୁ ପରିମାଣରେ ବଢ଼ିଯିବ । ଏମାନଙ୍କୁ ଉପଯୁକ୍ତ ଶାସ୍ତି ମିଳିବା ଦରକାର ।

ସୁନିଲ : ମୋର ଅନୁରୋଧ ରଖିବେ ନାହିଁ ?

ପୋ.ଇ : ଆପଣ ଆଉ ଥରେ ଭଲ ଭାବେ ଚିନ୍ତା କରନ୍ତୁ, ନଚେତ ଆପଣ ପରେ ଅନୁତାପ କରିବେ ।

ସୁନିଲ : ଏଇ ଥରକ ସେମାନଙ୍କୁ ଛାଡ଼ି ଦିଅନ୍ତୁ ।

ପୋ.ଇ : ଠିକ୍ ଅଛି, ଆପଣ ଯେତେବେଳେ କହୁଛନ୍ତି ମୁଁ ଏ ସମସ୍ତଙ୍କୁ ଆଜି ଛାଡ଼ି ଦେଉଛି । ରାମ ଶରଣ !

ରାମଶରଣ : ସାର୍ ।

ପୋ.ଇ : ସମସ୍ତଙ୍କ ହାତର ବନ୍ଧନ ଖୋଲିଦେ ।

ରାମଶରଣ : ସାର୍ । (ସମସ୍ତଙ୍କର ହସ୍ତରୁ ବନ୍ଧନ ଖୋଲିଦେଲା)

ସୁନିଲ : ମେନି ଥାଙ୍କସ୍ - ଇନ୍ସପେକ୍ଟର ମୁଁ ଆପଣଙ୍କ ଉପକାର ଭୁଲିପାରିବ ନାହିଁ ।

ପୋ.ଇ : ଏଇଟା ତ ଆମର କର୍ତ୍ତବ୍ୟ । ମୁଁ ତା ହେଲେ ଏଥର ଆସୁଛି ପ୍ରଫେସର ମହାପାତ୍ର । ଯଦି ଭବିଷ୍ୟତରେ ଏମାନେ କିଛି

ହଇରାଣ କରନ୍ତି, ତାହେଲେ ମତେ ଖବର ଦେବେ । ନମସ୍କାର ।

ସୁନିଲ : ନମସ୍କାର । (ପୋଲିସ ଇନସ୍‌ପେକ୍ଟର ଓ କନେଷ୍ଟବଲଙ୍କର ପ୍ରସ୍ଥାନ । ବାହାରେ ଜିପ୍ ଷ୍ଟାର୍ଟ ହେବାର ଶବ୍ଦ ।)

ମହେନ୍ଦ୍ର : ଧନ ଲୋଭରେ ମୁଁ ତୁମ ପରି ଦେବତାକୁ ଚିହ୍ନିବାରେ ଭୁଲ କରିଥିଲି । ସେଥିପାଇଁ ମୁଁ ଲଜ୍ଜିତ ଆଉ ଦୁଃଖିତ । ମୁଁ କ୍ଷମାର ମାତ୍ର ନୁହଁ ।

ସୁନିଲ : ଦେବତା କହି ମୋତେ ତୁମ ପାଖରୁ ଦୂରେଇ ଦିଅନା । ମୁଁ ଏଇ ଗାଆଁର ମଣିଷ । ତୁମରିମାନଙ୍କ ଭାଇ । ଏଇଠି ଜନ୍ମିଥିଲି, ଏଇଠିକି ଫେରି ଆସିଛି । ଅବଶିଷ୍ଟ ଜୀବନ ତୁମରିମାନଙ୍କ ପାଖରେ ରହିବି ।

ଆଲୋକ : ଆମେ ଆପଣଙ୍କୁ ଆଉ ଅସୀମା ଦେବୀଙ୍କୁ ଯେଉଁ ବ୍ୟବହାର ଦେଖାଇଛୁ ସେଥିପାଇଁ ଦୁଃଖିତ ।

ଶରତ : ଆମ ଦୋଷ ପାଇଁ ଆପଣ ଯେଉଁ ଦଣ୍ଡ ଦେବେ ଆମେ ହସି ହସି ଗ୍ରହଣ କରିବୁ ।

ମଦନ : ଆମେ ଆପଣଙ୍କ କ୍ଷମା ଆଉ ଦୟାର ପାତ୍ର ନୁହଁ, ଆପଣ ଆମ ମାନଙ୍କୁ ଦଣ୍ଡ ଦିଅନ୍ତୁ ।

ମହେନ୍ଦ୍ର : ଏମାନଙ୍କର କିଛି ଭୁଲ ନାହିଁ । ସବୁ ଭୁଲ ମୋର । ମୋରି କଥାରେ ଏମାନେ ତୁମକୁ ଖରାପ ବ୍ୟବହାର ଦେଖାଇଛନ୍ତି ।

ସୁନିଲ : ମୁଁ ଜାଣେ ତୁମମାନଙ୍କର କିଛି ଭୁଲ ନାହିଁ । ଆସ ଆଲୋକ, ମଦନ, ଶରତ ! ମୋ ପାଖକୁ ଆସ । ତୁମେ ସବୁ ଏ ଗାଆଁର ଶକ୍ତି ଓ ସମ୍ଭାବନା । ଅସୀମା ତୁ କାହିଁକି ମନ ମାରି ଠିଆ ହେଇଚୁ ? ଆମର ଏ ମହାମିଳନ ଦିନରେ ତୁମେ ସବୁ ମନ ଖୋଲି ହସ ।

ଅସୀମା : କିନ୍ତୁ....

ସୁନିଲ : କିନ୍ତୁ କ'ଣ ମାଆ ?

ଅସୀମା : ଆପଣ କ'ଣ ଆମେରିକା ଛାଡ଼ି ଆସିଥିଲେ ଏମିତି ଗୋଟେ ସ୍ଥାନକୁ ଯେଉଁଟା ଗାଆଁ ନୁହଁ କି ସହର ନୁହଁ ? ଏମିତି ଗୋଟେ ବିକଳାଙ୍ଗ ସ୍ଥାନରେ ଆମେ କାହିଁକି ରହିବା ?

ସୁନିଲ : ନା, ଅସୀମା ! ଏଇଟା ଆମ ପ୍ରିୟ ଗାଆଁ ଭୂଇଁ ଯିଏ ଆମକୁ ସୁଦୂର ଆମେରିକାରୁ ଟାଣି ଆଣିଛି । ଏହାର ନଷ୍ଟ ହୋଇ

ଯାଇଥିବା ପ୍ରାକୃତିକ ପରିବେଶକୁ ଗ୍ରାମ୍ୟ ସଂସ୍କୃତିକୁ ଅବକ୍ଷୟ କବଳରୁ ଆମକୁ ଉଦ୍ଧାର କରିବାକୁ ହେବ । ତା ନହେଲେ, ଆଉ ପଚାଶ ବର୍ଷ ପରେ ଗାଆଁ କ'ଣ ବୋଲି ଯଦି କେହି ଆମ ଉତ୍ତର ପୁରୁଷଙ୍କୁ ପଚାରେ ତାକୁ ଗାଆଁଟିଏ ଦେଖାଇ ହେବ ନାହିଁ । ସେତେବେଳକୁ ଗାଆଁ ନ ଥିବ । ଭାରତର ମାନଚିତ୍ରରୁ ଗାଆଁ ଚିତ୍ରଟି ସଂପୂର୍ଣ୍ଣ ଲିଭିଯାଇଥିବ । ହୁଏତ ତାକୁ ଗାଆଁର ତୈଳଚିତ୍ରଟିଏ ଦେଖାଇ ଗାଆଁ ବିଷୟରେ ଧାରଣା ଦେବାକୁ ହେବ ।

ମହେନ୍ଦ୍ର : ଆମେ ସବୁ ଆପଣଙ୍କ ପଛରେ ଅଛୁ ପ୍ରଫେସର ! ଆପଣ ଯାହା କହିବେ ଆମେ କରିବୁ ।

ଆଲୋକ : ଆମ ଏ ଗାଆଁର ସମସ୍ତ ଯୁବଶକ୍ତିର ହାତ ଲମ୍ବି ଆସିବ ଆପଣଙ୍କ ଆଡକୁ ।

ସୁନିଲ : ତାହେଲେ ଆପଣମାନେ ସମସ୍ତେ ମୋ ସ୍ୱର ସହିତ ସ୍ୱର ମିଳାଇ ଶପଥ କରନ୍ତୁ- ଭାଙ୍ଗିପଡୁଥିବା ଏ ଭୂମିକୁ ଆମେ ଆହୁରି ସୁନ୍ଦର କରି ଗଢ଼ିବୁ ।

(ମହେନ୍ଦ୍ର, ଶରତ, ଆଲୋକ, ମଦନ ଓ ଅସୀମା ସମସ୍ତେ ଏକ ସ୍ୱରରେ କହିଲେ) ଭାଙ୍ଗିପଡୁଥିବା ଏ ଭୂମିକୁ ଆମେ ସୁନ୍ଦର କରି ଗଢ଼ିବୁ ।

ସୁନିଲ : ଉଜୁଡ଼ି ଯାଉଥିବା ପ୍ରାକୃତିକ ପରିବେଶକୁ ଆମେ ପୁଣିଥରେ ସଜାଡ଼ିବୁ ।

ସମସ୍ତେ : (ଏକ ସ୍ୱରରେ) ଉଜୁଡ଼ି ଯାଉଥିବା ପ୍ରାକୃତିକ ପରିବେଶକୁ ଆମେ ପୁଣିଥରେ ସଜାଡ଼ିବୁ ।

ସୁନିଲ : ଆମ ଦେଶର ମାନଚିତ୍ରରୁ ହଜିଯାଉଥିବା ଗାଆଁର ଚିତ୍ରକୁ ଆହୁରି ସୁନ୍ଦର କରି ଆମେ ଆଙ୍କିବୁ ।

ସମସ୍ତେ : (ଏକା ସ୍ୱରରେ) ଆମ ଦେଶର ମାନଚିତ୍ରରୁ ହଜି ଯାଉଥିବା ଗାଆଁର ଚିତ୍ରକୁ ଆହୁରି ସୁନ୍ଦର କରି ଆମେ ଆଙ୍କିବୁ ।

(ସମସ୍ତେ ଏଇ ଶପଥ ବାରମ୍ବାର ନେଉଥିଲେ । ଏମିତି ଶପଥ ନେବା ମୁଦ୍ରାରେ ସମସ୍ତେ ଫ୍ରିଜ ହୋଇଯାଇଥିଲେ ।)



**ଆନନ୍ଦ ଚନ୍ଦ୍ର ପତି**

# ମୁହଁସଂଜ

(ସାମାଜିକ ନାଟକ)

ଆନଂଦ ଚଂଦ୍ର ପହି

# ଚରିତ୍ର ସୂଚୀ

ଧରଣୀ : ଗାଆଁ ଲୋକ । ବୟସ ପଚାଶ ବର୍ଷ ।

ଗଗନ : ଶିକ୍ଷିତ ଯୁବକ । ଭୁବନେଶ୍ୱରରେ ସରକାରୀ ଚାକିରି କରନ୍ତି ।

ବୃନ୍ଦାବନ : ଶିକ୍ଷିତ । ଜନପଦସ୍ଥ ସରକାରୀ କର୍ମଚାରୀ । ବୟସ ତିରିଶ ।

ସମର : ଶିକ୍ଷିତ ଯୁବକ । ଗଗନର ବନ୍ଧୁ । ଏକା ମେସ୍‌ରେ ରୁହନ୍ତି ।

ଭୋଳାନୀ : ଯୁବକ । ଅର୍ଦ୍ଧଶିକ୍ଷିତ । ବୟସ ୨୮ ବର୍ଷ ।

ଜାନକୀ : ଗାଉଁଲୀ ସ୍ତ୍ରୀଲୋକ । ଧରଣୀଙ୍କ ସ୍ତ୍ରୀ । ବୟସ ୪୫ ବର୍ଷ ।

[illegible]ପୀତା : ଶିକ୍ଷିତା ଯୁବତୀ । ବୃନ୍ଦାବନଙ୍କ ସ୍ତ୍ରୀ ।

# ପ୍ରଥମ ଦୃଶ୍ୟ

(ଗାଆଁରେ ଗଗନର ଘର । ସମୟ ସକାଳ ସାତଟା । ଗଗନ ଦାଣ୍ଡପିଣ୍ଡାରେ ବସି ଦାନ୍ତ ଘଷୁଛି । ଧରଣୀମାମୁ ଆସି ପହଞ୍ଚିଲେ ।)

ଧରଣୀ : ଗଗନ ! ଭୁବନେଶ୍ୱରରୁ କୋଉ ଦିନ ଆସିଲୁ ?

ଗଗନ : ବସ ଧରଣୀମାମୁ । ଏଇ ସପ ଉପରେ ବସ ।

ଧରଣୀ : ତୁ କୋଉ ଦିନ ଆସିଲୁ ?

ଗଗନ : କାଲି ଆସିଲି । ମୋ ଠେଇଁ କ'ଣ କାମ ଥିଲା ?

ଧାରଣୀ : ଭୁବନେଶ୍ୱରରେ ଆମ ବୃନ୍ଦାବନକୁ ଦେଖିଥିଲୁ କି ?

ଗଗନ : ବୃନ୍ଦାବନ କିଏ ?

ଧରଣୀ : ତୁ କ'ଣ ଆମ ବୃନ୍ଦାବନକୁ ଚିହ୍ନିନୁ ? ମୋ ଶଳା ଦେଇ ପୁଅ । ମୋ ଭଣଜା । ହଁ, ପିଲାଲୋକ, କେମିତି ଜାଣିବୁ ? ବୃନ୍ଦାବନ ସବୁବେଳେ ଦୂରରେ ଚାକିରି କଲା, ସିଏ କ'ଣ ଆମ ଗାଆଁକୁ ଆଉ କେବେ ଆସୁଛି ଯେ ତୁ ତାକୁ ଚିହ୍ନିବୁ ।

ଗଗନ : ତମ ଭଣଜା ?

ଧରଣୀ : ସିଏ ଏଇଠି ଆମ ଘରେ ରହି ଆମ ଗାଆଁ ହାଇସ୍କୁଲରେ ପଢୁଥିଲା । ବଢ଼ିଆ ପଢ଼େ ।

ଗଗନ : ଆମ ଗାଆଁ ସ୍କୁଲରେ.....

ଧରଣୀ : ସିଏ ପାଠ ପଢ଼ିବା ତୋର ମନେଥିବ । ସିଏ ଆମ ଘରେ ରହି ମେଟ୍ରିକ୍ ପଢ଼ିଛି । ତାପରେ କଟକରେ ପଢ଼ିଲା । ସେଇଠୁ ବୃତ୍ତି ପାଇ ଆମେରିକା ଗଲା । ଆମ ବୃନ୍ଦାବନ ତିନି ବରଷ ଆମେରିକାରେ ପଢ଼ିଛି । ବଳକା ତିନି ବରଷ । ଆମେରିକାରୁ ଫେରିବା ସାଙ୍ଗେ ସାଙ୍ଗେ ଚାକିରି ।

ଗଗନ : ସିଏ କ'ଣ ପ୍ରଥମରୁ ଭୁବନେଶ୍ୱରରେ ଚାକିରି କରୁଛନ୍ତି ?

ଧରଣୀ : ତାର ପହିଲୁ ଚାକିରି ହେଲା କୋରାପୁଟରେ । କୋରାପୁଟରେ ସିଏ ଥିଲାବେଳେ ମୁଁ ତା କତିକି ଗୋଟେ ଚିଠି ଦେଇଥିଲି । ମୋ ଚିଠି ପାଇକି ବୃନ୍ଦାବନ ଲେଖିଥିଲା - ମାମୁ ତମେ ଥରେ ଆସି କୋରାପୁଟ ବୁଲି ଯା । ଭାରି ବଢ଼ିଆ ଜାଗା । ଯୁଆଡ଼େ

ଅନେଇଁବ ଖାଲି ପାହାଡ଼ ଜଙ୍ଗଲ ।

ଗଗନ : ତମେ କୋରାପୁଟ ଯାଇଥିଲ ?

ଧରଣୀ : ଏତେ ଦୂର ଯିବା ପାଇଁ ରାସ୍ତା ଖର୍ଚ୍ଚ କୋଉଠୁ ପାଇବି ? ଭଣଜା ପାଖକୁ ରାସ୍ତା ଖରଚ ପାଇଁ ଲେଖିଲେ ଅସୁନ୍ଦର ହେବ । କୋରାପୁଟରୁ ବୃନ୍ଦାବନର ବଦଳି ହେଲା ସମ୍ବଲପୁର, ସମ୍ବଲପୁରରୁ ରାଉରକେଲା । ଚାକିରିର ଦଶ ବରଷ ପରେ ଏବେ ବୃନ୍ଦାବନ ଭୁବନେଶ୍ୱରକୁ ବଦଳି ହୋଇ ଆସିଚି ।

ଗଗନ : ଭୁବନେଶ୍ୱର ତ ଏଠୁ ଅଳ୍ପବାଟ, ତମେ ଯାଉନା ?

ଧରଣୀ : ତଥାପି ମୋ ହାତ କାତ ପାଉନେଇଁ । ଭୁବନେଶ୍ୱରକୁ ଗୋଟେ ପଟ ଗାଡ଼ିଭଡ଼ା ତିରିଶ ଟଙ୍କା ।

ଗଗନ : ତିରିଶ ଟଙ୍କା କ'ଣ ବେଶୀ ହେଇଗଲା ?

ଧରଣୀ : ତତେ କ'ଣ ଆମ ଘରକଥା ଅଜଣା ଅଛି ? ବାପାଙ୍କ କାଳ ହେଇଗଲାଠୁ ଆମ ଘରର ଅବସ୍ଥା ତଳକୁ ତଳକୁ ଯାଉଛି । ବାପା ସିନା ଏ ପାଞ୍ଚଖଣ୍ଡ ଗାଆଁର ପୁରୋହିତ ଥିଲେ ଯେ ଅଞ୍ଚଳଟା ଯାକର ବାହାଘର, ବ୍ରତଘର, ଭାଗବତପାଠ, ଠାକୁରପୂଜା, ମେଳା ସବୁଥିରେ ତାଙ୍କୁ ଖୋଜାପଡୁଥିଲା । ମତେ ତ କିଛି ବୋଲି କିଛି ଜଣାନାହିଁ । ଆମ୍ବତୋଳା, ଗଛଚଢ଼ା, ପାଣିବୁଡା, ମାଛଧରା ଆଉ ତାଆସ ପଶାଖେଳରେ ମୋ ପିଲାଦିନ କଟିଚି ।

ଗଗନ : ତମ ଜମିବାଡ଼ି କେତେ ?

ଧରଣୀ : ତୁ କ'ଣ ଜାଣିନାଁ, ମତେ ପଚାରୁଚୁ ?

ଗଗନ : ମୁଁ ଜାଣିଥିଲେ ତମକୁ ପଚାରନ୍ତି କାହିଁକି ?

ଧରଣୀ : ଜମି କଥା ନ କହିଲେ ଭଲ । ସବୁ ମିଶି ଦୁଇ ମାଣ । ସବୁ କ୍ଷିପ ବିଲ ।

ଗଗନ : ହେଲା କ'ଣ ହେଲା ? ତମେ ତ ଜମା ଚାରିଜଣ । ଦୁଇମାଣ ଜମିର ଧାନ କ'ଣ ତମକୁ ପାଉ ନେଇଁ ?

ଧରଣୀ : ଆରେ ଭଣଜା ତତେ ଆଉ କ'ଣ ବୁଝେଇବି ? ସେଇ ଦିଇ ମାଣ ଜମି ମୋ ବାପାଙ୍କୁ ଦାନରେ ମିଳିଥିଲା ।

ଗଗନ : ଦାନ ? ଦାନ କେମିତି ମିଳିଲା ?

ଧରଣୀ : ମୋ ବାପା ଏ ଖଣ୍ଡ ମଣ୍ଡଳର ସବୁଠୁ ଭଲ ପୁରୋହିତ ଥିଲେ ।

ଯୋଉ ବୁଢ଼ାବୁଢ଼ୀ ନ ମରିପାରି ଶେଷଅବସ୍ଥାରେ କଷ୍ଟପାଆନ୍ତି, ତାଙ୍କ ଘରଲୋକ ତାଙ୍କରି ନାଆଁରେ ବ୍ରାହ୍ମଣକୁ ଭୂମିଦାନ ଦିଅନ୍ତି । ଆମର ଯେତେକ ଜମି ସବୁସେଇ ଦାନରେ ମିଳିଥିଲା । କୋଉଠି କିଆରୀଟିଏ, କୋଉଠି ଅଧ କିଆରୀଏ । ତାକୁ ଚାଷ କରିବା କାଠିକର ପାଠ । ଗୋଟେ ହଳ ପଠାଇଲେ ସିଏ ଏଠି କିଆରୀଟିଏ, ସେଠି ଅଧକିଆରୀଟିଏ, ଏମିତି ଏ ବିଲ ସେବିଲ, ଏତକ, ସେତକ ହେଇ ହେଇ ତାର ବେଳ ଯିବ । ସେଇ ଦିମାଣ ଜମି ଆମର ଦଶ ଜାଗାରେ ।

ଗଗନ : ସେ ଜମି କି ବିକି ଗୋଟେ ଜାଗାରେ ଏକାଠି ଦୁଇମାଣ ଜମି କିଣି ଦଉନା ?

ଧରଣୀ : ଦାନ ଦିଆ ଜମି କେହି କିଣିବେ ନାହିଁ । ଯେଉଁମାନେ ସେ ଜମିକୁ ଦାନ ଦେଇଥିଲେ ସେମାନେ ନିଜ ନିଜ ଜମି ସାଙ୍ଗରେ ସେ ଜମିକୁ ହେବା ଗେବାକି ଚାଷ କରନ୍ତି । ଫସଲ ଅମଳ ବେଳେ ପ୍ରତି ଘରକୁ ଯାଇ ତାଙ୍କଠୁ ଫସଲ ଆଣିବାକୁ ପଡ଼େ । ସେଥିରେ ପୁଣି କିଏ କହେ ଆଜି ନାହିଁ, ଆଉ ଚାରିଦିନ କି ଆଠଦିନ ପରେ ଆସ । କାହା ଦୁଆରୁ ପାଞ୍ଚ ପାଞ୍ଚ ଥର ଖାଲି ହାତରେ ଫେରିବାକୁ ପଡେ । ମତେ ଲାଗେ ଏଇଟା ଦାନ ନୁହେଁ ଭିକ । ତୋ ମାଇଁ ମୋ ସାଙ୍ଗରେ ସବୁଦିନ ଝଗଡା ନଗୋଉଚି ।

ଗଗନ : କ'ଣ ପାଇଁ ଝଗଡ଼ା କରୁଛନ୍ତି ?

ଧରଣୀ : ସିଏ କହୁଚି ମୁଁ ଯୋଉଠୁ ହେଲେ ଧାର, ଉଧାର କରି ତିରିଶ ଟଙ୍କା ଆଣିକି ଦେବି, ତମେ ବୃନ୍ଦାବନ ପାଖକୁ ଭୁବନେଶ୍ୱର ଯାଅ । ତାକୁ ଆମ ଅସୁବିଧା କଥା କହିକି ଟଙ୍କା ପାଞ୍ଚ ହଜାର ଆଣି ଦୋକାନ ଖଣ୍ଡେ କଲେ ଆମ ଗୁଜୁରାଣ ମେଣ୍ଟନ୍ତା । ତମେ ତ ମୋଟେ ଯିବ ନେଇଁ, ତାଙ୍କର କ'ଣ ଟଙ୍କା ପଇସା ପଡ଼ିଯାଉଚି ଯେ ତମ ଘରେ ସିଏ ଆଣିକି ଯାଚିକି ଦେଇଯିବେ ?

ଗଗନ : ତମେ ତାହେଲେ ଚାଲୁନା । କାଲି ତ ମୁଁ ଭୁବନେଶ୍ୱର ଯିବି ତମେ ମୋ ସାଙ୍ଗରେ ଚାଲ ।

ଆନନ୍ଦ ଚନ୍ଦ୍ର ପହି

ଧରଣୀ : ତୋ ମାଈଁ ଯେମିତି ଅବୁଝା ହେଉଚି ତୁ ବି ସେମିତି ଅବୁଝା ହେଲୁ ? ମୁଁ କେମିତି ଭୁବନେଶ୍ୱର ଯିବି ? ମୋ ଭଣଜାର ତ ଗୋଟେ ମାନ, ସମ୍ମାନ ଅଛି ? ପ୍ରତିଦିନ ତା ଘରକୁ କେତେ ବଡ ବଡ ଲୋକ ଆସୁଥିବେ । ତା ଘରେ ଚପରାସି ଅଛି । ତାର ନିଜର ମଟରଗାଡ଼ି ଅଛି । ସିଏ ଯୋଉ ଘରେ ଭଡ଼ାରେ ଅଛି ସେ ଘରର ଭଡ଼ା କୁଆଡ଼େ ମାସକୁ ଚାରି ହଜାର ଟଙ୍କା କି ପାଞ୍ଚ ହଜାର ଟଙ୍କା । ମୁଁ ଖାଲି ଦେହଟାରେ ତାଘରକୁ କେମିତି ଯିବି ? ଫୁଙ୍ଗୁଳା ଦିହରେ ଭୁବନେଶ୍ୱର ଗଲେ ମୋ ଭଣଜାର ମୁହଁ ତଳକୁ ହବନେଇଁ ?

ଗଗନ : ହାତରେ ସେଇଟା କ'ଣ ଧରିଚ ?

ଧରଣୀ : ଏଇଟା ଗୋଟେ ଚିଠି । ତୁ ଏ ଚିଠିଟା ନେ. କାଲି ଯେମିତି ହେଲେ ଆମ ବୃନ୍ଦାବନକୁ ଦବୁ । ଏ ଚିଠି ପା[illegible]ଲେ ସିଏ ତୋ ହାତରେ ଗୋଟେ କାମିଜ ପାଇଁ କନାଦବ । ତୁ ସେ କାମିଜକନା ଆଣିଲେ ମୁଁ ସେଇଥିରେ କାମିଜ କରିବି । ତାକୁ ପିନ୍ଧି ତୋ ସାଙ୍ଗରେ ଭୁବନେଶ୍ୱର ଯିବି ।

ଗଗନ : ଏ ଚିଠିରେ ତ ଠିକଣା ଲେଖା ଯାଇ ନାହିଁ, ମୁଁ ତାଙ୍କ ଘର ପାଇବି କେମିତି ?

ଧରଣୀ : ତୁ ପରା ଭୁବନେଶ୍ୱରରେ ବରଷେ ହେଲା ଚାକିରି କରୁଛୁ ? ଆଜି ଯାଏ ସବୁ ଜାଗା ଦେଖିନଉଁ ?

ଗଗନ : ଭୁବନେଶ୍ୱର କ'ଣ ଆମ ଏଇ ଗାଆଁ ପରି ଛୋଟିଆ ଜାଗାଟିଏ ହେଇଚି ନା କ'ଣ ? ବରଷେ କ'ଣ, ଦଶ ବରଷ ରହିଲେ ବି ସବୁ ଜାଗା ଚିହ୍ନି ହେବ ନାହିଁ. ସମସ୍ତଙ୍କୁ ଜାଣି ହେବ ନାହିଁ ।

ଧରଣୀ : ତୁ ଦି'ଚାରି ଦିନ ଯାକୁ ତାକୁ ପଚାରିଲେ ଜାଣେ ପାଇଯିବୁ ।

ଗଗନ : ସେଠି କେତେ ନାଇଁ କେତେ ଚାକିରିଆ । ଆମ ଅଫିସ୍‌ରେ କେତେ ଚାକିରିଆ ଅଛନ୍ତି ଜାଣିଚ ?

ଧରଣୀ : କେତେ ?

ଗଗନ : ଦଶ ହଜାର ।

ଧରଣୀ : ଏଁ ଦଶ ହଜାର ! ହଁ, ହେଇଥିବ ।

ଗଗନ : ଭୁବନେଶ୍ୱରରେ ଲକ୍ଷେ ପାଖାପାଖି ଚାକିରିଆ ଥିବେ ।

ଧରଣୀ : ଏଁ ଲକ୍ଷେ !

ଗଗନ : ସିଏ କି ଚାକିରି କରନ୍ତି କହି ପାରିବ ?

ଧରଣୀ : ଖୁବ୍ ବଡ଼ ଚାକିରି କରିଚି ।

ଗଗନ : ସେ ଚାକିରିର କ'ଣ ନାଆଁ ନାହିଁ ?

ଧରଣୀ ଥିବନା ।

ଗଗନ ଥିବ ତ କହୁନା ?

ଧରଣୀ ମୁଁ ଜାଣିଥିଲେ କହନ୍ତି ନା ।

ଗଗନ କୋଉ ବିଭାଗ ସେ କଥା କହି ପାରିବ ?

ଧରଣୀ ଆଉ ଗୋଟେ କାମ କଲେ ତୁ ସହଜରେ ବୃନ୍ଦାବନର ବସା ପାଇଯିବୁ ।

ଗଗନ ଆଉ କି କାମ ?

ଧରଣୀ : ବୃନ୍ଦାବନ ଗାଆଁର ଜଳିଆ ଜେନା ଭୁବନେଶ୍ୱରରେ ନଅତାଲା କୋଠାରେ କ'ଣ ଚାଷ ଅଫିସିରେ କାମ କରୁଚି । ସିଏ ପିଅନ ଅଛି । ତାକୁ ପଚାରିଲେ ସିଏ ବୃନ୍ଦାବନ ବସା କଇଦବ ।

ଗଗନ : ତାହେଲେ ହେଲା । ଆଉ ଅସୁବିଧା ହବ ନେଇଁ ।

ଧରଣୀ ନିଶ୍ଚେ ଖୋଜିକି ଚିଠିଟା ଦବୁ । ଚିଠିଟା ହୁସିଆରି ନବୁ, ହଜାହଜି କରିବୁ ନଇଁ ।

ଗଗନ : ହଉ ।

ଧରଣୀ ତୁ ପୁଣି ଆଉ କୋଉ ଦିନ ଗାଆଁକୁ ଆସିବୁ ?

ଗଗନ : ଆର ମାସ ପ୍ରଥମ ଶନିବାର ।

ଧରଣୀ : ମନେ କରି ଚିଠିଟା ଦବୁ ମୁଁ ଯାଉଚି ।

ଗଗନ : ହଉ ।

(ଧରଣୀର ପ୍ରସ୍ଥାନ ।)



# ଦ୍ୱିତୀୟ ଦୃଶ୍ୟ

(ଭୁବନେଶ୍ୱରସ୍ଥ ବୃନ୍ଦାବନଙ୍କ ଭଡ଼ା ଘର । ଖରାଦିନ ସଂଧ୍ୟା । ଗଗନ କଲିଂବେଲ୍ ବଜାଇଲେ । କବାଟ ଖୋଲିଲେ ନିଜେ ବୃନ୍ଦାବନ ।)

ବୃନ୍ଦାବନ : କାହାକୁ ଖୋଜୁଛନ୍ତି ?

ଗଗନ : ଏଇଟା ବୃନ୍ଦାବନ ମିଶ୍ରଙ୍କ ଘର ?

ବୃନ୍ଦାବନ : ହଁ, କ'ଣ ହେଲା ?

ଗଗନ : ମୁଁ ବୃନ୍ଦାବନବାବୁଙ୍କୁ ସାକ୍ଷାତ କରିବାକୁ ଆସିଥିଲି ।

ବୃନ୍ଦାବନ : ଆସନ୍ତୁ । ଭିତରକୁ ଆସନ୍ତୁ । ବସନ୍ତୁ ।

ଗଗନ : ବୃନ୍ଦାବନବାବୁଙ୍କୁ.....

ବୃନ୍ଦାବନ : ମୁଁ ବୃନ୍ଦାବନ ମିଶ୍ର । କିନ୍ତୁ ମୁଁ ତ ଆପଣଙ୍କୁ.....

ଗଗନ : ନମସ୍କାର ଆଜ୍ଞା ।

ବୃନ୍ଦାବନ : ନମସ୍କାର ।

ଗଗନ : ଆମ ଘର ସପନପୁର । ଆପଣଙ୍କ ମାମୁଘର ଗାଆଁରେ । ଆପଣଙ୍କ ଧରଣୀମାମୁ ଏ ଚିଠିଟା ଆପଣଙ୍କ ପାଖକୁ ଦେଇଛନ୍ତି । (ପକେଟ୍‌ରୁ ଚିଠିଟିଏ ବାହାର କରି ଦେଲେ)

ବୃନ୍ଦାବନ : ଆପଣ କ'ଣ ସପନପୁରରୁ ସିଧା ମୋ ପାଖକୁ ଆସିଛନ୍ତି ?

ଗଗନ : ନା, ମୁଁ ଏ ଭୁବନେଶ୍ୱରରେ ଚାକିରି କରେ । ଗାଆଁକୁ ଶନିବାର ଦିନ ଯାଇଥିଲି । ଧରଣୀମାମୁ ଏ ଚିଠିଟା ଦେଲେ ।

ବୃନ୍ଦାବନ : ମୋ ଧରଣୀମାମୁ ଆପଣଙ୍କର ବି ମାମୁ ହେବେନା କ'ଣ ?

ଗଗନ : ମୋ ବଡ଼ଭାଇ, ଭଉଣୀ ତାଙ୍କୁ ମାମୁ ବୋଲି ଡାକନ୍ତି, ମୁଁ ତାଙ୍କରିଠୁ ଶୁଣି ଧରଣୀମାମୁ ବୋଲି ଡ଼ାକେ । କେଉଁ ସଂପର୍କରୁ ସିଏ ମୋର ମାମୁ ହେବେ, ମୁଁ ଏ ଯାଏ ସେ କଥା ଜାଣିନାହିଁ ।

ବୃନ୍ଦାବନ : (ହସିଲେ) ଗାଆଁରେ ଯେତେଲୋକ ଅଛନ୍ତି ସମସ୍ତେ ରକ୍ତ ସଂପର୍କର ନ ହେଲେ ବି କିଛି ନା କିଛି ସଂପର୍କ ଦଉଡ଼ିରେ ବନ୍ଧା । କିଏ ମାମୁ, କିଏ ଦାଦା, କିଏ ବଡ଼ପା, କିଏ ଭାଇ । ସେ ସଂପର୍କ ଲଟାର ମୂଳଚାଡ଼ି ବୀଜଟା ଆବିଷ୍କାର କରିବା ସମ୍ଭବ ନୁହଁ ।

ଗଗନ : ସେ କଥା ସତ ।

ବୃନ୍ଦାବନ : ଆରେ ଅର୍ପିତା ! କଫି ଦୁଇ କପ୍ ପଠା ।

ଅର୍ପିତା : (ଭିତରୁ) ନଉଚି ।

ଗଗନ : ନା, ଥାଉ । ମୁଁ ଏଇ ପାଖ ଦୋକାନରୁ ଚା' ପିଇ ଆସିଛି ।

ବୃନ୍ଦାବନ : ଇଏ କଣ ଗୋଟେ କଥା ? ଆପଣ ଆମ ମାମୁଘର ଗାଆଁଲୋକ କିଛି ନ ଖାଇ ଯିବେ କେମିତି ? ଆଚ୍ଛା ଆପଣ ମୋ ଘର ପାଇଲେ କେମିତି ?

ଗଗନ : ମୁଁ ଆପଣଙ୍କ ବସା ପାଇବାକୁ ଦୁଇଦିନ ଲାଗିଗଲା । ଧରଣୀମାମୁ ଆପଣଙ୍କ ଠିକଣା ଦେଇ ପାରିଲେ ନାହିଁ । ମୁଁ ଆପଣଙ୍କ ଗାଆଁର ଜଳଧର ଜେନାକୁ ଆଗ ଠାବ କରି ତାଠୁ ଆପଣଙ୍କ ଠିକଣା ଯୋଗାଡ଼ କଲି ।

ବୃନ୍ଦାବନ : ପୂରା ଠିକଣା ନ ଜାଣି ଭୁବନେଶ୍ୱରରେ ଜଣେ ଲୋକକୁ ପାଇବା ଅତି ଦୁଷ୍କର କାମ । ଆପଣ ନିଅନ୍ତୁ ଏ ଖବର କାଗଜଟା ଦେଖୁ ଥାଆନ୍ତୁ । ମୁଁ ଟିକେ ଚିଠିଟା ପଢ଼ି ନିଏ ।

ଗଗନ : (ଗଗନ ଖବର କାଗଜ ପଢ଼ିଲେ । ବୃନ୍ଦାବନ ନୀରବରେ ଚିଠି ପଢ଼ିଲେ । ଏଇ ସମୟରେ କଫି ଧରି ପ୍ରବେଶ କଲେ ଅର୍ପିତା ।)

ବୃନ୍ଦାବନ : ଅର୍ପିତା ! ଇଏ ହେଉଛନ୍ତି ମୋ ମାମୁଘର ଗାଆଁର ଲୋକ । ଆପଣଙ୍କ ନାଆଁଟା ?

ଗଗନ : ମୋ ନାଆଁ ଗଗନ ବିହାରୀ ଧଳ ।

ବୃନ୍ଦାବନ : ଆଉ ଇଏ ହେଉଛନ୍ତି ମୋର ମିସେସ ଅର୍ପିତା ମିଶ୍ର ।

ଗଗନ : ନମସ୍କାର ।

ଅର୍ପିତା : ନମସ୍କାର । କଫି ଥଣ୍ଡା ହୋଇଯିବ । ପିଇ ନିଅନ୍ତୁ ।

ବୃନ୍ଦାବନ : ଗଗନବାବୁ ! ନଉ ନାହାଁନ୍ତି, ଲାଜ କ'ଣ କରୁଚନ୍ତି ? ଆରେ ନିଅନ୍ତୁ ନା ।

ଗଗନ : ନଉଚି । (ଦୁହେଁ କଫି ପିଇଲେ)

ବୃନ୍ଦାବନ : ବୁଝିଲ ଅର୍ପିତା ! ମୋ ପିଲାଦିନ ମୋ ମାମୁଘର ଗାଆଁରେ କଟିଚି । ଅଜା ଥିବାବେଳେ ମାମୁଘରେ ରହି ମୁଁ ମାମୁଘର ଗାଆଁ ହାଇସ୍କୁଲରେ ମାଟ୍ରିକ ପାଶ୍ କରିଥିଲି । ଆଚ୍ଛା ଗଗନବାବୁ ! ହାଇସ୍କୁଲ ଆଗରେ ଯେଉଁ ଚୁନଘଣାଟା ଥିଲା

ସେଟା ଏବେ ଅଛି ନା ?

ଅର୍ପିତା : ଚୁନ ଘଣାରେ ତୁମର କି କାମ ?

ବୃନ୍ଦାବନ : ତୁମେ କେମିତି ଜାଣିବ ଅର୍ପିତା ମୋର ପିଲାଦିନର କେତେ ସ୍ମୃତି କେଉଁଠି ଲାଖି ରହିଛି ?

ଅର୍ପିତା : ଚୁନଘଣାରେ କ'ଣ ସ୍ମୃତି ପେଶା ଯାଉଥିଲା ? (ହସିଲେ)

ବୃନ୍ଦାବନ : ମୋ କପାଳରେ ଏ ଖଣ୍ଡିଆ ଦାଗଟା ଦେଖି ପାରୁଚ ? ମାମୁଘର ଗାଆଁ ହାଇସ୍କୁଲରେ ପଢିବା ବେଳେ ଚୁନ ଘଣାର ଚକବାଜି ମୋ ମୁଣ୍ଡଟା ଖଣ୍ଡିଆ ହେଇଯାଇଥିଲା । ତେଣୁ ସେ ଘଣାକୁ ମୁଁ ଆଜିଯାଏ ଭୁଲି ନାହିଁ ।

ଗଗନ : ସେ ଚୁନଘଣାଟା ଆଉ ସେଠି ନାହିଁ । ଆଜିକାଲି ସବୁକାମ ସିମେଣ୍ଟରେ ହେଉଚି । ଚୁନଘଣାଟା କ'ଣ ହେବ ? ସେଟା ଉଠାଇ ଦିଆ ଯାଇଛି । ସେ ସ୍ଥାନରେ କଲେଜ ତିଆରି ହେଲାଣି ।

ବୃନ୍ଦାବନ : ତୁମ ଗାଆଁର ଚୁକୁନା ଏବେ କ'ଣ କରୁଚି ?

ଗଗନ : ଚୁକୁନା କିଏ ସାର୍ ? ସେମିତି ଲୋକତ ଆମ ଗାଆଁରେ କେହି ନାହାଁନ୍ତି ।

ବୃନ୍ଦାବନ : ସିଏ ଆମ ଶ୍ରେଣୀରେ ସବୁଠୁ ଭଲ ପଢୁଥିଲା ।

ଅର୍ପିତା : ଚୁକୁନା କହିଲେ ଗଗନବାବୁ କେମିତି ବୁଝିବେ ? ତାଙ୍କର ଭଲ ନାଆଁ କ'ଣ ଥିଲା କହୁନା ।

ବୃନ୍ଦାବନ : (ହୋ ହୋ ହୋଇ ହସିଲେ) ସରି ସରି ମୋର ଭୁଲ ହେଇଗଲା । ତା ନାଆଁଟା...... ତା ନାଆଁଟା... ହଁ ତା ନାଆଁ ଅବିନାଶ ଜେନା ।

ଗଗନ : ଅବିନାଶ ଜେନା ତ ? ସିଏ ବର୍ତ୍ତମାନ କାନପୁର ଆଇ.ଆଇ.ଟିରେ ପ୍ରଫେସର ।

ବୃନ୍ଦାବନ : ସିଏ କେବେ ଗାଆଁକୁ ଆସିଲେ, ତାକୁ କହିବେ ମୁଁ ତା କଥା ପଚାରୁଥିଲି ।

ଅର୍ପିତା : ତମେ କେତେ ଥର ଗାଆଁକୁ ଯାଇଚ କହିଲ ? ତମେ ତ ଏଇ ଭୁବନେଶ୍ୱରରେ ଥାଇ ଗାଆଁକୁ ଯିବାକୁ ଫୁରସଦ୍ ପାଉନା, ସିଏ କାନପୁରରୁ ଗାଆଁକୁ ଆସିବେ କେମିତି ? ପୁଣି ସିଏ ଯେଉଁଦିନ ଆସିଥିବେ ଗଗନବାବୁ ସେଦିନ ଗାଆଁକୁ

ଯାଇଥିବେ ତାର କିଛି ମାନେ ଅଛି ?

ବୃନ୍ଦାବନ : ଯଦି କେବେ ଦେଖା ହେବ ତାହେଲେ କହିବେ, ନହେଲେ ନାହିଁ ।

ଗଗନ : ସିଏ ଗଲାବର୍ଷ ତାଙ୍କ ଭଉଣୀ ବାହାଘରକୁ ଗାଆଁକୁ ଆସିଥିଲେ ।

ବୃନ୍ଦାବନ : ତାର ପିଲାପିଲି କେଇଟି ?

ଗଗନ : ଅବିନାଶବାବୁଙ୍କର ପୁଅ ନାହିଁ । ଦୁଇଟି ଝିଅ ।

ବୃନ୍ଦାବନ : ବାବାଜିପୋଖରୀ ଆଉ ରାଣୀମନ୍ଦି ଦୁଇଟିଯାକ ପୋଖରୀ ସେମିତି ଅଛିନା ?

ଅର୍ପିତା : ତୁମର ଯେଉଁ ଅଦ୍ଭୁତ କଥା । ପୋଖରୀ ଦୁଇଟା କ'ଣ ତୁମ ଆସିବା ପଛେ ପଛେ ସେ ଗାଆଁ ଛାଡ଼ି ଜଙ୍ଗଲକୁ ଚାଲି ଯାଇଥାଆନ୍ତା, ନା ସହରକୁ ଉଡ଼ି ଯାଉଥାଆନ୍ତା ? ପୋଖରୀ ଦୁଇଟା ଯେଉଁଠି ଯେମିତି ଥିଲା ସେଇଠି ସେମିତି ଥିବ । ଗାଆଁ ଲୋକମାନେ ଯେମିତି ସେଥିରେ ଗାଧାଉଥିଲେ ସେମିତି ଗାଧାଉଥିବେ ।

ବୃନ୍ଦାବନ : ତୁମେ କିଛି ନ ଜାଣି କାହିଁକି କଥାବାର୍ତ୍ତା କର ?

ଅର୍ପିତା : କ'ଣ ମୁଁ ଜାଣି ନେଇଁ ? ନଈ, ପୋଖରୀ, ପାହାଡ଼, ପର୍ବତ ଏସବୁ କଣ ବଦଳିଯିବା ଏତେ ସହଜ କଥା ଯେ ବଦଳି ଯିବ ନା କୁଆଡ଼େ ପଳେଇ ଯିବ ?

ବୃନ୍ଦାବନ : ମୁଁ କୋଡ଼ିଏ, ପଚିଶ ବର୍ଷ ତଳର କଥା କହୁଛି । ଏତେ ବର୍ଷ ବ୍ୟବଧାନରେ କ'ଣ ତାର ମାନଚିତ୍ରରେ କିଛି ପରିବର୍ତ୍ତନ ହେଇ ନଥିବ ?

ଅର୍ପିତା : ସେ ପୋଖରୀ ଦୁଇଟାର କ'ଣ ଏମିତି ବିଶେଷତ୍ୱ ଥିଲା କି ?

ବୃନ୍ଦାବନ : ବାବାଜି ପୋଖରୀଟା ମୋ ମାମୁଘର ଗାଆଁର ଅତି ନିକଟରେ । ତାର ହୁଡାଗୁଡ଼ିକ ଖୁବ୍ ଉଚା ଉଚା । ହୁଡାରେ ଦୁଇଟି ବଡ଼ ବଡ଼ ଝଙ୍କାଳିଆ ବରଗଛ ଆଉ ଗୋଟେ କଦମ୍ବ ଗଛ । କଦମ୍ବ ଆଉ ବରଗଛର ଡାଳ ପୋଖରୀ ଆଡ଼କୁ ଲମ୍ବିଥିଲା । ପୋଖରୀରେ ଖୁବ୍ କଇଁଫୁଲ ଫୁଟୁଥିଲା । ଆମେ କଦମ୍ବ ଡାଳରେ ଚଢ଼ି ପାଣି ଭିତରକୁ ଡ଼େଇଁ ଥିଲୁ ।

ଗଗନ : ନା, ବାବାଜି ପୋଖରୀଟା ଆଉ ନାହିଁ ।

ବୃନ୍ଦାବନ : (ଚମକିପଡ଼ି) ନାହିଁ ମାନେ !

ଗଗନ : ପୋଖରୀ ହୁଡ଼ାକୁ ଆଗେ ବରଗଛ ଓ କଦମ୍ବ ଗଛ ହାଣି ବସନ୍ତ ଘଡ଼େଇ ବିକ୍ରି କରିଦେଲା । ସେ ପୋଖରୀଟା ଘଡ଼େଇ ଘର ପୋଖରୀ ଥିଲା । ଘଡ଼େଇ ବୁଢ଼ା ସେ ପୋଖରୀ ହୁଡ଼ାକୁ ହାଣି ତାଙ୍କ ବିଲ ସାଙ୍ଗରେ ମିଶାଇ ଦେଲା । ସେଠି ଆଉ ପୋଖରୀ ଫୋକରୀ କିଛି ନାହିଁ । ସେ ସ୍ଥାନଟା ଖାଁ ଖାଁ ଲାଗୁଛି ।

ବୃନ୍ଦାବନ : ବାବାଜିପୋଖରୀକୁ ଦେଖିଲେ ଦଶକୁମାର ଚରିତ ଗପ ବହିର ପୋଖରୀ କଥା ମନେ ପଡ଼େ, ଯୋଉଠିକି ଘୋଡ଼ା ଚଢ଼ି ରଜାପୁଅ ଆସିଥିଲା । ଘୋଡ଼ାକୁ ବରଡ଼ାଳରେ ବାନ୍ଧି ବରଗଛରେ ଲୁଚିକରି ବସିଥିଲା । ସେ ପୋଖରୀରେ ଅକାତ କାତ ପାଣି ଥିଲା । ପ୍ରକାଣ୍ଡ ବରଗଛର ଡାଳ ପୋଖରୀ ଭିତରକୁ ଲମ୍ବିଥିଲା । ଦିନ ଯାଇ ରାତି ହେଲା । ମଣିଚୂଳ ନାଗ ଆସିଲା । ତା ମଥାର ମଣିରେ ସେ ପୋଖରୀ କୂଳ ଉଜଳ ହୋଇ ଉଠିଲା ?

ଅର୍ପିତା : ସେଇଠୁ କ'ଣ ହେଲା ?

ବୃନ୍ଦାବନ : ସେଇଠୁ ଯାହା ହେଲା ମୋର ମନେ ନାହିଁ । ତମେ ସେ ଗପବହି ପଢ଼ି ଜାଣିବ । ମୋର କେବଳ ସେଇ ପୋଖରୀର ଦୃଶ୍ୟ ମନେ ଅଛି, କାରଣ ସେଇ ପୋଖରୀର ବର୍ଣ୍ଣନା ସହିତ ବାବାଜି ପୋଖରୀର ଦୃଶ୍ୟରେ ସାମଞ୍ଜସ୍ୟ ଥିଲା ।

ଅର୍ପିତା : ଆଉ ଆର ପୋଖରୀଟାର କ'ଣ ବିଶେଷତ୍ୱ ଥିଲା ?

ବୃନ୍ଦାବନ : ରାଣୀମନ୍ଦି ପୋଖରୀଟା ମାମୁଘର ଗାଆଁଠୁ ପ୍ରାୟ ଏକ କିଲୋମିଟର ଦୂରରେ ବଣ ଭିତରେ ଥିଲା । ଚାରିକଡ଼ ଜଙ୍ଗଲ ତା ଭିତରେ ପୋଖରୀ । ଖରାଦିନେ ସେ ପୋଖରୀର ପାଣି ପିଇବାକୁ ବାଘ, ହାତୀ, ହରିଣ ଆସନ୍ତି ।

ଗଗନ : ରାଣୀମନ୍ଦି ପୋଖରୀ କିଛିଟା ପୋତି ହୋଇଗଲାଣି । କିନ୍ତୁ ଏବେବି କିଛି ପାଣି ଖରାଦିନ ଆରମ୍ଭ ପର୍ଯ୍ୟନ୍ତ ରହୁଛି । ଲୋକମାନେ ଗାଈ ଗୋରୁ ଗାଧୋଇ ଦେଉଛନ୍ତି । କିନ୍ତୁ ତା ଚାରିପାଖରେ ଥିବା ଜଙ୍ଗଲ ଆଉ ନାହିଁ । ଜଙ୍ଗଲ କଥା ଛାଡ଼ନ୍ତୁ ବୁଦି ବୁଦିକିଆ ଅନାବନା ଗଛ ବି ନାହିଁ ।

ବୃନ୍ଦାବନ : ରାଣୀମନ୍ଦି ପୋଖରୀ ହୁଡ଼ାରେ ଯେଉଁ ବଡ଼ ବରଗଛଟା ଥିଲା

ନିମ୍ବ ଗଛଟା ଥିଲା ?

ଗଗନ : ବରଗଛଟା ଅଛି କିନ୍ତୁ ତାର ଅନେକ ଡାଳ ଭାଙ୍ଗି ଗଲାଣି । ନିମ୍ବ ଗଛଟା ଗଲା ବର୍ଷ ବାତ୍ୟାରେ ଉପୁଡ଼ି ପଡ଼ିଲା ?

ବୃନ୍ଦାବନ : ତାହେଲେ ମୋର ଅନେକ ସ୍ମୃତିର ଅପମୃତ୍ୟୁ ଘଟିଲାଣି ।

ଅର୍ପିତା : କେବଳ ତୁମର କାହିଁକି ସମସ୍ତଙ୍କ ସ୍ମୃତି ଗାଆଁ ମାଟିରୁ ଲିଭି ଲିଭି ଯାଉଛି । ପ୍ରତି ଗାଆଁର ଛବି ବଦଳୁଛି ।

ବୃନ୍ଦାବନ : ହଁ, କୋଡ଼ିଏ ପଚିଶ ବର୍ଷ ତଳେ ଗାଆଁର ପ୍ରାକୃତିକ ପରିବେଶ ଯାହା ଥିଲା ତାହା ଆଜି ନାହିଁ । ମୋର ଆଶଙ୍କା ହୁଏ ଆଉ ପଚିଶ ତିରିଶ ବର୍ଷ ପରେ ଆମ ଓଡ଼ିଶା ମାନଚିତ୍ରରୁ ଗାଆଁର ଚିତ୍ର ହୁଏତ ଲିଭିଯିବ ।

ଅର୍ପିତା : ହଁ, ଗାଆଁର ଚେ଼ହେରାରେ ଯେତେ ଦ୍ରୁତ ପରିବର୍ତ୍ତନ ଘଟୁଛି, ସେ କଥା କିଛି ଅସମ୍ଭବ ନୁହଁ । ଗାଆଁ ହୁଏତ ରହିବ କିନ୍ତୁ ଆମବେଳର ଗାଆଁ ଆଉ ରହିବ ନାହିଁ ।

ବୃନ୍ଦାବନ : ଆଚ୍ଛା ଗଗନବାବୁ ! ଧରଣୀମାମୁଙ୍କ ଦେହ ପା' ଭଲ ଅଛି ତ ?

ଗଗନ : ହଁ, ସେମିତି ଏକ ରକମ ଅଛି ।

ବୃନ୍ଦାବନ : ମାମୁ କେମିତି ଚଳୁଚନ୍ତି ?

ଗଗନ : ଭାରି ଅଭାବରେ ଅଛନ୍ତି । ତାଙ୍କର ପୁଅ ନାହିଁ । ଦି'ଇଟା ବିଧବା ଝିଅ ତାଙ୍କ ବେକରେ ବନ୍ଧା ।

ଅର୍ପିତା : ମାମୁ କ'ଣ କିଛି କାମଧନ୍ଦା କରୁ ନାହାନ୍ତି ?

ଗଗନ : କାମ ଧନ୍ଦା କ'ଣ କରିବେ ? ପାଠ, ଶାଠ ତ ପଢ଼ି ନାହାନ୍ତି । ପୁରୋହିତ କାମ ତାଙ୍କୁ ଜଣାନାହିଁ । ବ୍ରାହ୍ମଣଘର, ତେଣୁ ହଳ କରିବେ ନାହିଁ । କୋଉଠି କେମିତି ବାହାଘର ଭୋଜି, ବ୍ରତଘର ଇତ୍ୟାଦିରେ ରୋଷେଇ କରି କିଛି କିଛି ପାଆନ୍ତି । ସେ କାମ ସବୁଦିନ ମିଳେ ନାହିଁ । ଅଧା ଦିନ ଭୋକ ଉପାସରେ କଟାଉଛନ୍ତି ।

ଅର୍ପିତା : ଆଜିକାଲି ଦିନ ଯାହା ସେଥିରେ କିଛି ରୋଜଗାର ନକଲେ ଚ଼ଳିବ କେମିତି ?

ବୃନ୍ଦାବନ : ଆପଣ ପୁଣି କେବେ ଗାଆଁକୁ ଯିବେ ?

ଗଗନ : ଆସନ୍ତା ମାସ ପ୍ରଥମ ଶନିବାର ଦିନ ଯିବି ।

ବୃନ୍ଦାବନ : ଆପଣ ଗାଆଁକୁ ଯିବା ଆଗରୁ ଦୟାକରି ଟିକେ ମୋତେ

ଦେଖାକରି ଯିବେ ।

ଗଗନ : ହଁ, ମୁଁ ଗାଆଁକୁ ଯିବା ପୂର୍ବଦିନ ଆପଣଙ୍କୁ ଦେଖା କରିଯିବି ।

ବୃନ୍ଦାବନ : ତାଛଡ଼ା ଆପଣ ମଝିରେ ମଝିରେ ଆସୁଥିବେ । ଆପଣଙ୍କ ଗାଆଁ ସହିତ ମୋର ପିଲାଦିନର ପରିଚୟ । ମୋ ଜୀବନ ମାନଚିତ୍ରରେ ଆପଣଙ୍କ ଗାଆଁଟି ସ୍ୱତନ୍ତ୍ର ଆସନ ଦାବିକରେ । ଆପଣଙ୍କ ଗାଆଁ ମନେ ପଡ଼ିଲେ ମୁଁ ତନ୍ମୟ ହୋଇଯାଏ । ଆପଣଙ୍କ ଗାଆଁ ତଳର ପାହାଡ, ଆମ୍ବତୋଟା, କୋଳିବୁଦା, ପାଦଚଲା ବିଲ ରାସ୍ତା ଏବେ ବି କେତୋଟି ସୁନ୍ଦର ତୈଳଚିତ୍ର ପରି ଅଭୁଲା ରହିଛି ।

ଅର୍ପିତା : ଏତେ ବେଶୀ ତନ୍ମୟ ହେବାଟା ଏ ବୟସରେ ଶୋଭାପାଉନାହିଁ ।

ବୃନ୍ଦାବନ : ମୋର କ'ଣ ମନେ ହେଉଛି ଜାଣ ଅର୍ପିତା ?

ଅର୍ପିତା : କ'ଣ ମନେ ହେଉଛି ?

ବୃନ୍ଦାବନ : ହ୍ୟାପ୍ ପ୍ୟାଣ୍ଟ ଖଣ୍ଡେ ପିନ୍ଧି ମୋ ମାମୁଘର ଗାଆଁ ଦାଣ୍ଡେ ଦାଣ୍ଡେ ଦୋଉଡ଼ନ୍ତି, ପୋଖରୀରେ ବୁଡ଼ନ୍ତି, ଧୂଳିରେ ଗଡ଼ନ୍ତି, ବରଓହଳରେ ଦୋଳି ଖେଳନ୍ତି ।

ଅର୍ପିତା : ଗଗନବାବୁ ! ମୋର ଆଶଙ୍କା ହୁଏ ଆପଣ ଯଦି ଆଉ ଘଣ୍ଟାଏ ବସି ଆପଣଙ୍କ ଗାଆଁ କଥା ଆଲୋଚନା କରିବେ ତାହେଲେ ଇଏ ଶିଶୁଟିଏ ହୋଇ ଆପଣଙ୍କ ସାଇକେଲ୍ ପଛେ ପଛେ ଗୋଡ଼େଇ ଯିବେ ତାଙ୍କ ମାମୁଘର ଗାଆଁ ପର୍ଯ୍ୟନ୍ତ । (ତିନିଜଣ ଯାକ ହୋ ହୋ ହୋଇ ହସି ଉଠିଲେ)

ଗଗନ : ରାତି ହେଲାଣି, ମୁଁ ଏବେ ଆସୁଛି ।

·ନ୍ଦାବନ : ଗାଆଁକୁ ଯିବା ପୂର୍ବରୁ ଟିକେ ଆସିବେ ।

ଗଗନ : ଆସିବି । ନମସ୍କାର ।

ବୃନ୍ଦାବନ }<br>ଅର୍ପିତା } : ନମସ୍କାର ।

(ଗଗନଙ୍କର ପ୍ରସ୍ଥାନ ।)



ଆନନ୍ଦ ଚନ୍ଦ୍ର ...ହି

# ତୃତୀୟ ଦୃଶ୍ୟ

(ଗଗନବାବୁଙ୍କ ମେସ୍ । ସମୟ ରାତି ଆଠଟା ।)

ସମର : ଗଗନବାବୁ ! ଆଜି ଏତେବେଳ ଯାଏ କୁଆଡ଼େ ଥିଲ ? କ'ଣ ଅଫିସରେ କାମ ଥିଲା ନା ବଜାରରେ ବୁଲିକି ଝିଅ ଦେଖୁଥିଲ ?

ଗଗନ : ତୁମର ଦୁଇଟାଯାକ ଅନୁମାନ ଶତକଡ଼ା ଶହେ ଭୁଲ ସମରବାବୁ ! କାରଣ ଆମେ ତୁମପରି ନୁହଁ ।

ସମର : ଆମ ପରି ତମେ ନୁହଁ କି ତମେ ସାତ ଜନମରେ ଆମ ପରି ହୋଇ ପାରିବ ନାହିଁ ।

ଗଗନ : ଆମେ କାହିଁକି ତୁମ ପରି ଅଫିସ କାମ ସରିବା ପରେ ପଛେଇ ପଛେଇ ରହି ସମସ୍ତଙ୍କ ଘରବାହୁଡ଼ା ବେଳଉଣ୍ଡି ଅଫିସର୍‌ଙ୍କ ଆଗରେ କାନ କୁଣ୍ଡେଇ, ଦାନ୍ତ ଦେଖେଇ, ହାତ ମଳାମଳି କରିବୁ ନା ବଜାରରେ ଟହଲ ମାରି ଝିଅ ଦେଖିବୁ ? ବୁଝିଲ ସମର ବାବୁ ! ସମର କରିବାକୁ ତମର ଯଦି ଇଚ୍ଛା ତାହେଲେ ଅପେକ୍ଷା କର । ମୁଁ ପୋଷାକ ପତ୍ର ବଦଳାଇ ପ୍ରସ୍ତୁତ ହୋଇ ଆସେ ।

ସମର : ତମେ ତାହେଲେ ଏତେ ବେଳଯାଏ କୁଆଡ଼େ ଥିଲ ?

ଗଗନ : ସେଇକଥା ସିଧା ନ ପଚାରି କଥାକୁ ଏମିତି, ଯାଡ଼େ ସାଡ଼େ ବୁଲଉଥିଲ କାହିଁକି ?

ସମର : ହଉ ହେଲା, ଏବେ କୁହ କୁଆଡ଼େ ଥିଲ ?

ଗଗନ : ଆମ ଗାଆଁର ଜଣେ ଲୋକ ତାଙ୍କ ଭଣଜା ପାଖକୁ ଖଣ୍ଡେ ଚିଠି ଦେଇଥିଲେ । ସେଇ ଲୋକର ଘର ଖୋଜି ଖୋଜି ଦୁଇଦିନ ହେଲା ପାଉ ନଥିଲି । ଭାଗ୍ୟକୁ ଆଜି ମିଳିଗଲା ।

ସମର : ତାଙ୍କ ଘର କେଉଁ ୟୁନିଟ୍‌ରେ ?

ଗଗନ : ନାଗେଶ୍ୱର ଟାଙ୍ଗିରେ । ଭାରି ବଢ଼ିଆ ଲୋକ । ଏତେ ବଡ଼ଲୋକ ଟିକେ ହେଲେ ଗର୍ବ ଅହଂକାର ନାହିଁ । ତାଙ୍କ ସ୍ତ୍ରୀ ମଧ ତାଙ୍କଠୁ ବଳି । ସ୍ୱାମୀ, ସ୍ତ୍ରୀ ଦୁହିଁଙ୍କି ଦୁହେଁ ଭାରି ସୁନ୍ଦର, ଭାରି ଭଦ୍ର ।

ଆନନ୍ଦ ଚନ୍ଦ୍ର ପହି

ସମର : କ'ଣ ଖୋଇ ଦେଇଚନ୍ତି କି ଓଡ଼ିଆକୁ ? ଖାଲି ତ କ'ଣ ପ୍ରଶଂସାର ସୁଅ ଛୁଟିଚି ।

ଗଗନ : ନାଇଁ, ମୁଁ ସେମାନଙ୍କ ଘରେ ସେମିତି କିଛି ଖାଇନେଇଁ । ଖାଲି କଫି ଗୋଟେ କପ୍ । ତାଙ୍କ କଥାରେ ମୋ ପେଟ ପୂରିଗଲା ।

ସମର : ପୂରି ଯାଇଥିବ ବନ୍ଧୁ, ପୂରି ଯାଇଥିବ । ସେ ବାବୁଙ୍କ ସ୍ତ୍ରୀଟି ନିଶ୍ଚୟ ଅନିନ୍ଦ୍ୟ ସୁନ୍ଦରୀ ।

ଗଗନ : ତାଙ୍କୁ କେତେ ବୟସ ଜାଣିଛୁ ?

ସମର : କେତେ ?

ଗଗନ : ବୃନ୍ଦାବନ ବାବୁଙ୍କୁ ୪୫/୪୬ ହେବ ଆଉ ତାଙ୍କ ସ୍ତ୍ରୀ ଅର୍ପିତା ଦେବୀଙ୍କୁ ବୟସ ୪୦ ଉପରେ ହେବ ।

ସମର : ହଉ ତୁମର ବୃନ୍ଦାବନ-ଅର୍ପିତା ଉପାଖ୍ୟାନ ସେଇଠି ଥାଉ । ଆଜି କ'ଣ ଆମ ମେସ୍‌ରେ ରୋଷେଇ ହେବ ନାହିଁ ?

ଗଗନ : କାହିଁକି ମଧୁ କୁଆଡ଼େ ଗଲା କି ?

ସମର : ସିଏ ଆଜି ତା ଗାଆଁକୁ ଗଲା । ତା ମାଆ ଦେହ ଖରାପ ।

ଗଗନ : କେବେ ଆସିବ ?

ସମର : କାଲି ଆସିବ ବୋଲି କହି ଯାଇଚି ତ ?

ଗଗନ : ତପନବାବୁ ଆଉ ପାର୍ଥବାବୁ କୁଆଡ଼େ ଗଲେ ?

ସମର : ତାଙ୍କ ଅଫିସ୍‌ର କାହାର ପୁଅ ବ୍ରତଘର । ସେ ଦୁହେଁ ସେଠିକି ଯାଉଛନ୍ତି ବୋଲି ତାଙ୍କ ଅଫିସ୍ ପିଅନ କହି ଦେଇଗଲା । ତାଙ୍କର ଆଜି ମିଲ୍ ପଡ଼ିବ ନାହିଁ ।

ଗଗନ : ତାହେଲେ ଆଜି କିଏ ଆଉ ରୋଷେଇ କରୁଚି । ଆଜି ରାତିଟା ହୋଟେଲ୍‌ରେ ଖାଇଦେବା ।

ସମର : ତମେ ତ ଆଜି ଖୁସିରେ ଛଳ ଛଳ ହେଉଛ, ତମର ଖାଇବା କ'ଣ ଦରକାର ?

ଗଗନ : ସତରେ ସମର ବାବୁ ! ମୁଁ ଆଜି ଭାରି ଖୁସି । ମୁଁ ଆଜି ଦୁଇଟି ସଫଳ ମଣିଷ ଦେଖିଲି । ଏତେ ବଡ଼ ଅଫିସର ବୃନ୍ଦାବନବାବୁ ଆଉ ତାଙ୍କ ସ୍ତ୍ରୀ ଅର୍ପିତା ଦେବୀ ଜଣେ ଏତେ ବଡ଼ ଅଫିସରର ସ୍ତ୍ରୀ କିନ୍ତୁ ଦୁହିଁଙ୍କର ବ୍ୟବହାର କି ସୁନ୍ଦର ! ଦୁହିଁଙ୍କର ରୂପ ଯେମିତି ସୁନ୍ଦର, ତାଙ୍କ ବ୍ୟବହାର ସେମିତି ମଧୁର । ଘରର ସାଜସଜା ଅତି ଚମତ୍କାର ।

ସମର : କ'ଣ ଏତେ ସୁନ୍ଦର ?

ଗଗନ : ଡ୍ରଇଁ ରୁମ୍‌ରେ ଟିକ୍ ଉତର ସୋଫାସେଟ୍, ରଙ୍ଗୀନ ଟିଭି,

ଗଡରେଜ ଆଲ୍‌ମିରା, ଗ୍ଲାସ ଆଲମିରା ଥାକରେ ଅନେକ ବହୁମୂଲ୍ୟ ପୁସ୍ତକ। କାନ୍ଥସାରା ବିଭିନ୍ନ ଭଙ୍ଗୀର କୋଣାର୍କ ମୂର୍ତ୍ତି। ଗୋଟେ ବଡ଼ ଆକୁରିୟମ। ଆକ୍ୟୁରିୟମ୍‌ରେ ବିଭିନ୍ନ ରଙ୍ଗର ମାଛ। ଚଟାଣରେ ପଡ଼ିଛି ସୌଖିନ ଭେଲ୍‌ଭେଟ୍ ଗାଲିଚା।

ସମର : ଏଠି ସବୁ ବଡ଼ ବଡ଼ିଆଙ୍କ ଡ୍ରଇଁରୁମ୍‌ର ଚିତ୍ର ଏକାପରି ରେ ମଫ। ଆଉ କେତେ ଦିନ ରାଜଧାନୀରେ ରହିଲେ ଏତିକି ଜାଣିବ ?

ଗଗନ : ନା, ମୁଁ ଏଥିରେ ଏକମତ ନୁହଁ। ମୁଁ ଅନେକ ଘର ଦେଖିଛି କିନ୍ତୁ ଏମିତି ରୁଚିବନ୍ତ ସାଜସଜା କେଉଁଠି ଦେଖିନାହିଁ।

ସମର : ଏ ବଡ଼ ବଡ଼ିଆଙ୍କ ଡ୍ରଇଁରୁମଟି ଯେତିକି ସୁନ୍ଦର ତାଙ୍କ ଭିତରଟା ସେତିକି ଅନ୍ଧାର।

ଗଗନ : କିନ୍ତୁ ବୃନ୍ଦାବନବାବୁ ଭାରି ଭଲ ଲୋକ।

ସମର : ବୃନ୍ଦାବନବାବୁ କ'ଣ ନା ବ୍ରଜନାଥବାବୁ କ'ଣ ? ସେମାନେ ସମସ୍ତେ ମୁହଁରେ ମିଠା କଥା କୁହନ୍ତି। ଚା, କଫି, ସର୍ବତ କିମ୍ବା ଅତି ବେଶିରେ ସାମାନ୍ୟ ଟିକେ ଜଳଖିଆ ଦେଇ ସାରିବା ପରେ ଚାହିବେ ତୁମକୁ ବିଦା କରିବାକୁ। ଯଦି କିଏ ସେତିକି ହଜମ କରି ସାରିବା ପରେ ବି ଅଟକି ରହେ, ସେଇଠୁ ଆରମ୍ଭ ହୁଏ ଆଣ୍ଟିକ୍ଲାଇମାକ୍ସ। ତାଙ୍କ ମୁହଁର ଚାରିଧାରକୁ ଧରି ଖେଳୁଥିବା ହସଟା ଆସ୍ତେ ଆସ୍ତେ ବିବର୍ଣ୍ଣ ଦିଶେ। କଥାବାର୍ତ୍ତା ସଂକ୍ଷିପ୍ତ ହୋଇଯାଏ। ବାରମ୍ବାର ଘଣ୍ଟା ଦେଖା ଆରମ୍ଭ ହୁଏ।

ଗଗନ : ସତେ ନା କ'ଣ ?

ସମର : ରାଜଧାନୀ ରହଣି ତୁମର ବେଶିଦିନ ହୋଇଗଲେ ସବୁ କଥା ଧୀରେ ଧୀରେ ସମଝି ଯିବୁ ବନ୍ଧୁ। ଚାଲ ଏଥର ହୋଟେଲ୍‌କୁ ଯିବା। ଆଗରୁ ନ ଗଲେ ଡ଼ାଲମା ଥିଲେ ସନ୍ତୁଳା ନଥିବ। ରୁଟି ସରିଯିବାର ମଧ ଆଶଙ୍କା ଅଛି।

ଗଗନ : ହଉ ତୁମେ ଟିକେ ଅପେକ୍ଷା କର ସମରବାବୁ। ମୁଁ ଟିକେ ହାତ ମୁହଁ ଧୋଇ ହୋଇ ଆସେ।

ସମର : ଶୀଘ୍ର କାମ ସାର।



ଆନଂଦ୍ର ଚଂଦ୍ର ପତି

# ଚତୁର୍ଥ ଦୃଶ୍ୟ

(ଧରଣୀମାମୁଙ୍କ ଘର । ସମୟ ସଂଧ୍ୟା । ଧରଣୀମାମୁ ଓ ତାଙ୍କ ସ୍ତ୍ରୀ ଜାନକୀ କଥାବାର୍ତ୍ତା ହେଉଥିଲେ )

ଜାନକୀ : ହରିଆ ଦୋକାନ ପଡ଼ିଯିବ ତମେ ଯାଉନା ଝଅଟ ।

ଧରଣୀ : (ନୀରବ)

ଜାନକୀ : ଘରେ କିଛି ବୋଲି କିଛି ସଉଦା ନାହିଁ, ତମେ ଏମିତି ଖୁମାଣ ହେଇକି ବସିଲେ ହବ ?

ଧରଣୀ : ସିଏ ମତେ ଆଉ ବାକି ଦଉନେଇଁ ।

ଜାନକୀ : ସିଏ ଦଉକି ନ ଦଉ ତମେ ତ ଏଇଠୁ ନାହିଁ କରିଦବ । ସବୁକଥାକୁ ଏମିତି ହାଣ ମୁହଁକୁ ନେଲାମିଣି ପଛକୁ ଘୋଷାରି ହେଲେ କ'ଣ କେମିତି ହବ ?

ଧରଣୀ : ତା ଦୋକାନରେ ବହେ ବାକି ହେଲାଣି । ତା ବାକି ପଇସା ନ ଶୁଝିଲେ ସିଏ ଆମକୁ ଆଉ ସଉଦା ଦେବ ନେଇଁ ।

ଜାନକୀ : କାଇଁକି ଆମେ କ'ଣ ବାକି ଶୁଝିବୁ ନେଇଁ ? କିଏ କଣ ତାକୁ [illegible] ମାଗୁଛି ?

ଧରଣୀ : ପଅରି ଦିନ ସଂଜବେଳେ ହରିଆ ରୋକ୍‌ଠୋକ୍ ମନା କଲା । କଇଲା- ଗଲା ମାସର ବାକି ତମେ ଶୁଝିନା, ଏ ମାସରେ ଆହୁରି ଦେଢ଼ଶହ ଟଙ୍କା ହେଲାଣି । ନିହାତି ପକ୍ଷେ ଗଲା ମାସର ବାକି ନ ତୁଟେଇଲେ ତମକୁ ଆଉ ସଉଦା ଦେଇ ପାରିବି ନେଇଁ ।

ଜାନକୀ : ତାକୁ କଇଦବ ଏ ମାସରେ ମୁଁ ଆମ ବୃନ୍ଦାବନ ପାଖକୁ ଭୁବନେଶ୍ୱର ଯିବି । ତାଠୁ ଟଙ୍କା ଆଣିଲେ ତମର ସବୁବାକି ତୁଟେଇ ଦେବି ।

ଧରଣୀ : ସେତ ଭରି ଡିହା । ଜମା ଶୁଣିବ ନେଇଁ ।

ଜାନକୀ : ଶୁଣିବ ନେଇଁ କ'ଣ ? ବୁଝେଇକି କହିଲେ ସିଏ ନିଶ୍ଚେ ଶୁଣିବ । ସେ ଦିନ ତମେ ଗଗନ ହାତରେ ଭୁବନେଶ୍ୱର ଚିଠି ଦେବାବେଳେ ହରିଆ ଥିଲାଟି ?

ଧରଣୀ : ନାଇଁ । ମୁଁ ତାକୁ ସେ କଥା ପଅରି ଦିନ ତା ଦୋକାନରେ କହିଚି ।

ଜାନକୀ : ସେ କଥା ଶୁଣିଲାଠଉଁ ପଅରି ଦିନ ତମକୁ ସଜବା ହେଲାଟି ? ଆଜି ତମେ ଏମିତି ସୁଆଙ୍ଗ କାକୁତ କାଇଁକି ?

ଧରଣୀ : ହଉ, କୁହ କ'ଣ କ'ଣ ଆସିବ ?

ଜାନକୀ : ମଶୁରଡାଲି ଦୁଇଶ, ସୋରିଷତେଲ ଶହେ, ଲୁଣ ଅଧକିଲେ, ତୁଗାଧୁଆ ସୋଡ଼ା ପଚିଶ ପଇସା....

ଧରଣୀ : ସେତିକି ଥାଉ ଆଉ ନମ୍ନାନା ।

ଜାନକୀ : ଡିବିରିଟା ନିଅ କିରାସିନି ଡିବିରିଏ ଆଣିବ ।

ଧରଣୀ : ସୋରିଷତେଲ ଶିଶି ଆଉ ଡିବିରିଟା ଦେ ।

ଜାନକୀ : ନିଅ ।

ଧରଣୀ : ଆଜି କିବାର ହେଲା ?

ଜାନକୀ : ସୋମବାର ।

ଧରଣୀ : ଗଗନ ଭୁବନିଶର ଯିବାର ଆଜିକି ଆଠ ଦିନ ହେଲା । ସିଏ ନିଶ୍ଚେ ମୋ ଚିଠିଟା ଯା ଭିତରେ ବୃନ୍ଦାବନକୁ ଦେଇ ସାରିବଣି । କ'ଣ କହୁଚୁ ?

ଜାନକୀ : ଆଠ ଦିନ ହେଲାଣି ଦେଇ ନଥିବ ?

ଧରଣୀ : ମୁଁ ଭୁବନିଶର ଗଲେ ବୃନ୍ଦାବନଠଉଁ ଟଙ୍କା ଆଣିକି ସେଇ ରାଜ ହରିଆ ଦୋକାନ ଆଗରେ ଜମେଇକି ଗୋଟେ ଦୋକାନ କରିବି । ତୁ ଦେଖିବୁ ଆମ ଦୋକାନ ହେଲେ ସେଟା ଦୋକାନକୁ କେହି ଯିବେ ନେଇଁ । ପଇସା ହେଇଗଲାଣି ବୋଲି ସିଏ ଭାରି ଦିମାକିଆ ଧରି ଗଲାଣି । ସମସ୍ତଙ୍କୁ ମାଡ଼ ମାଇଲା ଭଳିଆ ଟାଣ ଟାଣ କଥା କହୁଚି । ଭାରି ହାଣୁଆଟାଏ ।

ଜାନକୀ : ଦୋକାନ ପେଇଁ ପାଞ୍ଚ ହଜାର ଟଙ୍କା ଆଉ ଧାର ଉଧାର ଶୁଝିବା ପେଇଁ ଆଉ ଦି ହଜାର ଏମିତି ସାତ ହଜାର ହେଲେ ଯାଇକି ହବ ।

ଧରଣୀ : ଆମକୁ ସାତ ହଜାର ଟଙ୍କା ବଡ଼, ହେଲେ ଆମ ବୃନ୍ଦାବନ ପେଇଁ ସେଟା ଦିହର ମଳି । ତୁ ଦେଖିବୁ ମୁଁ ଖାଲି ତା ପାଖରେ ପହଞ୍ଚିଗଲେ ସବୁ ହେଇଯିବ । ମତେ କିଛି ମୁହଁ ଖୋଲି କହିବାକୁ ପଡିବ ନେଇଁ । ଆମ ଘର କଥା ସିଏ ସବୁ ଜାଣିଚି ।

ଜାନକୀ : ପୂରାହାତ କମିଜି ପେଇଁ କନା ପଠେଇବାକୁ ନେଖିତ ତ ?

ଧରଣୀ : କାଇଁକି, କ'ଣ ହେଲା ?

ଜାନକୀ : ବାହାଘରକୁ ତମେ ଯୋଉ ପୂରାହାତ କମିଜିଟା ପିନ୍ଧିଥିଲ ସେଇଟା ତମକୁ ଭାରି ମାନେ ।

ଧରଣୀ : ସେଟାତ କୋଡିଏ ପଚିଶି ବରଷ ହେଲା ଚିରିଗଲାଣି । ସେକଥା କାଇଁକି ମନେ ପକଉଚୁ ?

ଜାନକୀ : ସେମିତିଆ ପୂରାହାତ କାମିଜିଟେ କରିବ ।

ଧରଣୀ : ସେମିତିଆ ନୁହଁ, ତାଠୁ ଆହୁରି ବଢ଼ିଆ କମିଜିଟେ କରିବି । ସେଟା ସୂତା କାମିଜି ଥିଲା । ଆମ ବୃନ୍ଦାବନ କଣ ସୂତା କନା ଦବ ? ସିଏ ନିଶ୍ଚେ ବଢ଼ିଆ ଟେରିକଟ୍ କନା ଦବ । ଦି ମିଟର କନା ଦବା ପେଇଁ ମୁଁ ଚିଠିରେ ନେଖିଚି । ଦି ମିଟରରେ ମୋ ପେଇଁ କ'ଣ ପୂରାହାତ କମିଜି ହବ ନେଇଁ ?

ଜାନକୀ : ମୁଁ କେମିତି କଇବି ? ତମେ ଦରଜିକି ପଚାର ।

ଧରଣୀ : ସେ କାମ କ'ଣ ବାକି ଅଛି ?

ଜାନକୀ : ହଉ, ତାହେଲେ ତମେ ଝଅଟ ଯା, ନହେଲେ ଦୋକାନ ପଡ଼ିଯିବ ।

ଧରଣୀ : ଯାଉଚି ।

ଜାନକୀ : ବେଶୀ ଡ଼େରି କରିନ ନେଇ । ଝଅଟ ଆସିବ ।

ଧରଣୀ : ହଉ ।

(ଧରଣୀର ପ୍ରସ୍ଥାନ ।)



ଆନନ୍ଦ ଚନ୍ଦ୍ର ପତି

# ପଞ୍ଚମ ଦୃଶ୍ୟ

(ଧରଣୀ ରାତିରେ ଶୋଇକି ସ୍ୱପ୍ନ ଦେଖୁଛି । ସିଏ ନୂଆ କାମିଜ ପିନ୍ଧି ବୃନ୍ଦାବନ ଘରକୁ ଭୁବନେଶ୍ୱର ଯାଇଛି । ବୃନ୍ଦାବନ ଘରେ ଧରଣୀ ଖାଇ ବସିଛି )

ବୃନ୍ଦାବନ : ମାମୁ ! ତମକୁ ଆଉ ଦିଖଣ୍ଡ ମାଂସ ଦଉଚି ?

ଧରଣୀ : (ଖାଉ ଖାଉ) ନା, ଥାଉ । ବହୁତ ହେଇଗଲାଣି ଆଉ ଖାଇ ପାରିବି ନେଇଁ । ବୋହୂ ଆମର ଭାରି ବଢ଼ିଆ ରାନ୍ଧିଚନ୍ତି । ତୋ ମାଇଁଟାକୁ ଜମା ରାନ୍ଧି ଆସେନେଇଁ ।

ବୃନ୍ଦାବନ : ତମେ ଯୋଉ ଆରିସା ପିଠା ଆଣିଥିଲ, ତାକୁ ମାଇଁ କରିଥିଲେ ତ ?

ଧରଣୀ : ହଁ, ତୋ ମାଇଁ କରିଥିଲା ।

ବୃନ୍ଦାବନ : ଭାରି ଭଲ ଲାଗିଲା । ଏଠିକା ରସଗୋଲା, ଛେନାପୋଡ଼ଠାରୁ ମାଇଁଙ୍କ ହାତ ତିଆରି ଆରିସା ପିଠା ଭରି ବଢିଆ । ତୁମ ବୋହୂକୁ ଆରିସା ପିଠା ତିଆରି ଆସେ ନାହିଁ । ମାମୁ ! ତମ ସାଙ୍ଗରେ ମାଇଁକି ଟିକେ ଭୁବନେଶ୍ୱର ଆଣିଲ ନେଇଁ । ଲିଙ୍ଗରାଜ ମନ୍ଦିର, କେଦାରଗୌରୀ, ରାଜରାଣୀ ମନ୍ଦିର ଆଉ ଖଣ୍ଡଗିରି ବୁଲିକି ଦେଖି ଯାଇଥାନ୍ତେ ?

ଧରଣୀ : ମୁଁ ତୋ ବସା ଦେଖିଗଲି, ଏଥର ଆଉ କିଛି ଅସୁବିଧା ହବ ନେଇଁ । ଆର ମାସରେ ତୋ ମାଇଁକି ଆଣିକି ଭୁବନେଶ୍ୱର ବୁଲେଇ ନେବି ।

(ଧରଣୀ ଖାଇସାରି ଏହୁଡ଼ି ମାରିଲେ । କୁଳିକରି ମୁହଁ ଧୋଇହେଲେ)

ବୃନ୍ଦାବନ : ଦେଖିଲ ମାମୁ ଏଇ ସାର୍ଟଟା ତମକୁ ହଉଚିକି ନାହିଁ ?

ଧରଣୀ : ପୁଣି କାହିଁକି ଗୋଟେ କାମିଜ ଆଣିଲୁ ? ତୁ ଯୋଉ କନା ଦେଇଥିଲୁ ସେଇଥିରେ ଏଇ କାମିଜଟା କରିଚି । ଆଉ ଗୋଟେ କାମିଜ କ'ଣ କରିବି ?

ଅର୍ପିତା : (ଦୂରରେ ରହି) ଗୋଟେ ସାର୍ଟ ଅସୁବିଧା ହବ । ଗୋଟେ ସାର୍ଟକୁ ଧୋଇ ଶୁଖେଇ ପିନ୍ଧିଲେ ଅଳ୍ପ ଦିନରେ ନଷ୍ଟ

ହେଇଯିବ ।

ବୃନ୍ଦାବନ : ତମେ ପିନ୍ଧିଲ ମାମୁ, ପିନ୍ଧ ।

ଧରଣୀ : (ହସି ହସି) ପିନ୍ଧୁଚି, ପିନ୍ଧୁଚି । ଆରେ ବୃନ୍ଦାବନ ! ଏଟା ପୁଣି କ'ଣ ?

ଅର୍ପିତା : (ଦୂରରୁ) ମାଇଁଙ୍କ ଶାଢ଼ି ।

ବୃନ୍ଦାବନ : ମାଇଁଙ୍କ ପାଇଁ ଖଣ୍ଡେ ଶାଢ଼ି ଆଣିଚି । ଅର୍ପିତା କହିଲା- ମାଇଁ ତ ଆସିଲେ ନାହିଁ, ତାଙ୍କ ପାଇଁ......

ଧରଣୀ : ଏଇନେ ଏତେଗୁରେ ପଇସା ଖରଚ କରି ଶାଢ଼ି ନ ଆଣି ଥିଲେ କ'ଣ ହେଇ ନଥାନ୍ତା ?

ବୃନ୍ଦାବନ : ମାଇଁ ଆଉ ତମେ ମୋ ପାଇଁ ଯାହା କରିଚ, ତମ ଋଣ ଶୁଝିହବ ନେଇଁ ।

ଧରଣୀ : ମୁଁ କହୁଥିଲି....

ବୃନ୍ଦାବନ : କହୁନା ?

ଧରଣୀ : ଆମରତ ଚାଷ ବାସ କଲା ପରି ଜମିବାରି ନାହିଁ । ହଳ ହଡ଼ା କରିବାକୁ ମୋ ହାତରେ ଧନ ନାହିଁ କି ମୁଁ ଚାଷବାସ ଜାଣିନେଇଁ । ମୁଁ ଭାବୁଥିଲି.... ତୋ ମାଇଁ କହୁଥିଲା- ଗାଆଁରେ ଗୋଟେ ତେଜରାତି ଦୋକାନ କରିଥିଲେ ଆମ ଗୁଜୁରାଣ ମେଣ୍ଟିଥାନ୍ତା ।

ବୃନ୍ଦାବନ : ଭଲ ହବ, କରୁନା ?

ଧରଣୀ : କରିବି ଯେ.... ହେଲେ...

ବୃନ୍ଦାବନ : ପଇସା ପାଇଁ ଚିନ୍ତା କରନା । କେତେ ଲାଗିବ ?

ଧରଣୀ : ସେମିତି ବଡ଼ ଦୋକାନ କଲେ ଅଧ ଲକ୍ଷେ ଟଙ୍କା ନାଗିବ । ମୁଁ ଛୋଟ କାଟିଆ ଦୋକାନଟିଏ କରିବି ।

ବୃନ୍ଦାବନ : ଦଶ ହଜାର ଟଙ୍କା ହେଲେ ହେଇଯିବ ?

ଧରଣୀ : ହଁ, ଢ଼େର ହବ ।

ବୃନ୍ଦାବନ : ଅର୍ପିତା ! ମାମୁଙ୍କୁ ଦଶହଜାର ଟଙ୍କା ଦିଅ ।

ଅର୍ପିତା : ଆଣୁଚି । (ପ୍ରସ୍ଥାନ)

ଧରଣୀ : ତୁ ଆଉ ବୋହୂ ଆମ ଗାଆଁକୁ କେବେ ଯିବ ?

ବୃନ୍ଦାବନ : ଏବୁବେଳେ ତ କାମ ଉପରେ କାମ, କେତେବେଳେ ଫୁରୁସତ ହେଲେ ନିଶ୍ଚେ ଯିବୁ ।

ଆନନ୍ଦ ଚନ୍ଦ୍ର ପହି

ଅର୍ପିତା : (ପ୍ରବେଶ) ନିଅ, ଟଙ୍କା ନିଅ ।

ବୃନ୍ଦାବନ : ନିଅ ମାମୁଁ, ଇଏ ଦଶ ହଜାର ଟଙ୍କା ଅଛି । ଏତିକିରେ ନହେଲେ ମତେ କହିବ ଆଉ ପଠେଇବି ।

ଧରଣୀ : ହଉ, ମୁଁ ଏଥର ଯାଉଚି ।

ବୃନ୍ଦାବନ : ଆଉ ଟିକେ ଅପେକ୍ଷା କର, ଗାଡ଼ିଟା ଗ୍ୟାରେଜରୁ ଫେରୁ ତମକୁ ନେଇ ବସଷ୍ଟାଣ୍ଡରେ ଛାଡ଼ି ଦେଇ ଆସିବ ।

ଧରଣୀ : ଆଉ ଡେରି ହେଲେ ଆମ ଗାଆଁ ବସଟା ପଳେଇବ । ମୁଁ ଯାଉଚି ।

ବୃନ୍ଦାବନ : ନମସ୍କାର ।

ଧରଣୀ : ନମସ୍କାର ।

ବୃନ୍ଦାବନ : ସେଠି ତମ ବୋହୂ ନମସ୍କାର କରୁଚି ।

ଧରଣୀ : କିଏ ତାକୁ ଅକଇଲାଣ କରୁଚି ?

ବୃନ୍ଦାବନ : ଆର ଥର ମାଇଁକି ଧରିକି ଆସିବ ମାମୁ ।

ଧରଣୀ : (ଯାଉ ଯାଉ) ଆସିବି, ଆସିବି । (ପ୍ରସ୍ଥାନ)
(ସ୍ୱପ୍ନ ଦୃଶ୍ୟ ଶେଷ ହେଲା । ମଞ୍ଚ ଅନ୍ଧକାର ହେଲା । ପୁଣି ଆଲୋକ ଆସିବା ବେଳେ ଦେଖାଗଲା ଧରଣୀ ଓ ଜାନକୀ ପାଖାପାଖି ହୋଇ ତାଙ୍କ ନିଜ ଘରେ ଶୋଇଛନ୍ତି । ଶୋଇବା ସ୍ଥାନରେ ଧରଣୀ ହଠାତ୍ ଚିତ୍କାର କରି ଉଠିଲା - ନେଇଗଲା, ନେଇଗଲା । ମୋ ଟଙ୍କା ନେଇକି ପଳେଇଲା । ଚୋର, ଚୋର, ଚୋର ।)

ଜାନକୀ : (ନିଦରୁ ଉଠି ଧରଣୀକୁ ହଲାଇ ଦେଇ) ଏମିତି କାଇଁକି ପାଟି କରୁଚ ?

ଧରଣୀ : ଚୋର, ଚୋର, ଚୋର ।

ଜାନକୀ : ନିଦରେ ଶୋଇକି ଏମିତି ବିଳବିଳେଇ ହଉଚ କ'ଣ ?

ଧରଣୀ : ଚୋର, ଚୋର ।

ଜାନକୀ : ଚୋର କାଇଁ ?

ଧରଣୀ : ନେଇକି ପଳେଇଲା ।

ଜାନକୀ : କ'ଣ ନେଇକି ପଳେଇଲା ?

ଧରଣୀ : ଦଶ ହଜାର ଟଙ୍କା ।

ଜାନକୀ : ଦଶ ହଜାର ଟଙ୍କା ? ଟଙ୍କା କୋଉଠୁ ଆଇଲ ?

ଧରଣୀ : ଆମ ବୃନ୍ଦାବନ ଦେଇଥିଲା ।

ଜାନକୀ : ଦଶ ହଜାର ଟଙ୍କା, ବୃନ୍ଦାବନ, ଚୋର ଏସବୁ କ'ଣ କହୁଚ ? ସପନ ଦେଖୁଥିଲ ?

ଧରଣୀ : ଏଁ ସପନ ?

ଜାନକୀ : ସପନ ନୁହଁତ ଆଉ କ'ଣ ? ତମେ ତ ଏଠି ଆମଘରେ ଶୋଇଚ, ବୃନ୍ଦାବନ ଯାଇଁ ଭୁବନେଶ୍ୱରରେ । ଏଠି ଟଙ୍କା କାଇଁ ନା ଚୋର କାଇଁ ? ରାତି ଅଧଟାରେ ତୁଣ୍ଡାଟାରେ ମୋ ଭାତ ନିଦଟା ଭାଙ୍ଗିଦେଲ । ଆଉ ବକର ବକର ହୁଅନା ଶୋଇପଡ଼ ।

ଧରଣୀ : ଶୋଇ ପଡ଼ିବି ?

ଜାନକୀ : ହଁ, ଚୁପ୍ ଚାପ୍ ଶୋଇପଡ଼ ।

ଧରଣୀ : ହଉ ଶୋଉଚି । (ଦୁହେଁ ଶୋଇପଡ଼ିଲେ ।)



ଆନଂଦ ଚଂଦ୍ର ପହି

# ଷଷ୍ଠ ଦୃଶ୍ୟ

(ବୃନ୍ଦାବନବାବୁଙ୍କ ଘର । ସମୟ ସଂଧ୍ୟା । ଗଗନ ଓ ସମର ଦୁହେଁ ଯାଇଛନ୍ତି ବୃନ୍ଦାବନବାବୁଙ୍କ ଘରକୁ)

ଅର୍ପିତା : ଆରେ ଗଗନବାବୁ ! ଆସନ୍ତୁ ଭିତରକୁ ଆସନ୍ତୁ ।

ଗଗନ : ନମସ୍କାର ।

ଅର୍ପିତା : ନମସ୍କାର । ଆପଣଙ୍କ ସାଙ୍ଗରେ ସେ ବାବୁ....

ସମର : ନମସ୍କାର ।

ଅର୍ପିତା : ନମସ୍କାର ।

ଗଗନ : ଇଏ ମୋ ସାଙ୍ଗ ସମରବାବୁ । ଆମେ ଦୁହେଁ ଗୋଟିଏ ମେସ୍‌ରେ ରହୁ ।

ଅର୍ପିତା : ବସନ୍ତୁ । ମୁଁ ଆପଣମାନଙ୍କ ପାଇଁ କିଛି ଜଳଖିଆ ଆଣେ ।

ଗଗନ : ନାଇଁ, Madam ଆମେ ଏଇଲେ ଖାଇକି ଆସିଲୁ । ସାର୍ ନାହାଁନ୍ତି କି ?

ଅର୍ପିତା : ନା, ସିଏ କାଲିଠୁ ଟୁର୍‌ରେ ଗଲେଣି । ଆସନ୍ତା କାଲି ଫେରିବେ ।

ଗଗନ : ଆମେ ତାହେଲେ ଯାଉଛୁ ।

ଅର୍ପିତା : ସାର୍ ନାହାନ୍ତି ବୋଲି କ'ଣ ଆପଣମାନେ ପାଞ୍ଚ, ସାତମିନିଟ୍ ବି ବସିବେ ନାହିଁ ?

ଗଗନ : ନାଇଁ ଯେ....

ଅର୍ପିତା : କ'ଣ ଗାଆଁକୁ ଯିବାକୁ ତରବର ହେଉଛନ୍ତି ? ଆଜି ଶନିବାର ତ ? ଆପଣଙ୍କ ଗାଡ଼ି କେତେଟାରେ ?

ଗଗନ : ଗାଡ଼ି ଆଉ ଘଣ୍ଟାଏ କୋଡ଼ିଏ ମିନିଟ୍ ଡେରି ଅଛି ।

ଅର୍ପିତା : ଏଠୁ ତ ଷ୍ଟେସନ ମୋଟେ ଦଶ ପନ୍ଦର ମିନିଟ୍‌ର ବାଟ । ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? କ'ଣ ଯାତେ ଯାଡ଼େ ବାହାରିକି ଆସିଛନ୍ତି ନା ପୁଣି ମେସ୍‌କୁ ଯିବେ ?

ଗଗନ : ନାଇଁ, ମୁଁ ମେସ୍‌ରୁ ବାହାରି ଆସିଛି । ଯାଡ଼େ ଯାତେ ଷ୍ଟେସନ ଯିବି । ସମରବାବୁ ସାଇକେଲରେ ମୋତେ ଛାଡ଼ି ଦେଇ ଆସିବେ ।

ଅର୍ପିତା : ଫ୍ଲାସ୍‌ରେ କଫି ଅଛି, ମୁଁ ଏଇ ସାଙ୍ଗେ ସାଙ୍ଗେ ଆଣୁଚି । (ପ୍ରସ୍ଥାନ)

ସମର : ସତରେ ଗଗନବାବୁ ! ମାନିବାକୁ ହେବ ଅର୍ପିତାଦେବୀ ମାର୍ଜିତ ରୁଚିର ଜଣେ ଭଦ୍ରମହିଳା । ନିଜେ ଯେମିତି ସୁନ୍ଦର, ତାଙ୍କ କଥାଗୁଡ଼ିକ ସେମିତି ମାର୍ଜିତ । ପୁଣି ସବୁଠୁ ଚମତ୍କାର ଏ ଘରର ଡେକୋରେସନ୍ ।

ଗଗନ : ଆଉ ସେଦିନ ମତେ ପରିହାସ କରୁଥିଲ ?

ସମର : ମୁଁ ଭାବିଥିଲି ତମେ ପୁଡ଼ି ମାରୁଥିଲ ବୋଲି ।

ଅର୍ପିତା : (କଫି ଧରି ପ୍ରବେଶ) ନିଅନ୍ତୁ ଗଗନବାବୁ ! କଫି ନିଅନ୍ତୁ । ଆରେ ଲାଜ କରୁଚନ୍ତି କ'ଣ ନିଅନ୍ତୁ ? ସମରବାବୁ ନିଅନ୍ତୁ ! କଫି ଥଣ୍ଡା ହୋଇ ଯିବ ଯେ ।

ସମର : ନଉଚି ଆଜ୍ଞା ! (କଫି ପିଇଲେ)

ଗଗନ : ଆପଣ କାଲି ଏଇ ସଂଧ୍ୟା ସମୟରେ ଘରେ ନଥିଲେ କି ? ଘର ଚାବି ପଡ଼ିଥିଲା ?

ଅର୍ପିତା : ସିଏତ କାଲିଟୁରରେ ଗଲେ । ଆମ ଚାକର ପିଲାଟା ଆଜି କି ଚାରିଦିନ ହେଲା ଗାଆଁକୁ ଯାଇଛି ଫେରି ନାହିଁ । ଅଫିସ୍ ପିଅନଟା ଆସି ନଥିଲା । ମତେ ଘରେ ଏକୁଟିଆ ବୋର୍ ଲାଗିଲା । ମୁଁ ସଂଧ୍ୟାବେଳେ ମୋର ଜଣେ ବାନ୍ଧବୀ ଘରକୁ ଚାଲିଯାଇଥିଲି । କିନ୍ତୁ ଆପଣ ତ କହିଯାଇଥିଲେ ଆଜି ମାନେ ଶନିବାର ଦିନ ଆସିବା ପାଇଁ ।

ଗଗନ : ମୁଁ କାଲି ଏପଟକୁ ମୋର ଜଣେ ସାଙ୍ଗ ଘରକୁ ଆସିଥିଲି ଭାବିଲି ସାରଙ୍କୁ ଦେଖା କରି ଦେଇଯିବି ।

ଅର୍ପିତା : ଆପଣଙ୍କ ମେସ୍‌ରେ ଆପଣ ଆଉ ସମରବାବୁ, ଏଇ ଦୁଇଜଣ ନା ଆଉ କିଏ ରହୁଚନ୍ତି ?

ଗଗନ : ଆମେ ଚାରିଜଣ ରହୁଛୁ । ଆମ ଦୁହିଁଙ୍କ ଛଡ଼ା ଆଉ ଦୁଇଜଣ ପାର୍ଥବାବୁ ଆଉ ତପନବାବୁ ।

ଅର୍ପିତା : ମେସ୍ ଜୀବନ ପ୍ରକୃତରେ ଭାରି ଚମତ୍କାର । ମୁଁ କଲେଜ୍ ଲାଇଫ୍‌ଟା ହଷ୍ଟେଲ୍‌ରେ କଟେଇଚି ।

ସମର : ପାଠ ପଢ଼ା ଦିନର ମେସ୍ ଜୀବନ ଆଉ ଚାକିରି କାଳର ମେସ୍ ଜୀବନ ଭିତରେ ଆକାଶ ପାତାଳ ଫରକ ଅଛି ।

ଅର୍ପିତା : ସେ ଯାହାହେଲେ ବି ମେସ୍ ଜୀବନର ଗୋଟେ ଆକର୍ଷଣ ଅଛି ।

ଗଗନ : ଆମେ ଆସୁଛୁ ଆଜ୍ଞା ଗାଡ଼ି ଟାଇମ୍ ହେଇଗଲାଣି ।

ଅର୍ପିତା : ଠିକ୍ ଅଛି, ମୁଁ ଆପଣଙ୍କୁ ଆଉ ବେଶୀ ସମୟ ଅଟକାଉ ନାହିଁ । ଏଇ ପ୍ୟାକେଟଟା ସିଏ ରଖି ଦେଇ ଯାଇଛନ୍ତି । କହିଛନ୍ତି ଆପଣ ଆସିଲେ ଦେଇଦେବାକୁ ।
(ଗୋଟିଏ କାଗଜ ପ୍ୟାକେଟ୍ ବଢ଼ାଇ ଦେଲେ)

ଗଗନ : ଏ ପ୍ୟାକେଟଟା ଧରଣୀମାମୁଙ୍କୁ ଦେବି ତ ?

ଅର୍ପିତା : ହଁ । ମାମୁଙ୍କୁ ଦେଇଦେବେ ।

ଗଗନ : ଆମେ ତାହେଲେ ଆସୁଛୁ । ନମସ୍କାର ।

ଅର୍ପିତା : ନମସ୍କାର ।

ସମର : ନମସ୍କାର ।

ଅର୍ପିତା : ନମସ୍କାର ।



ଆନନ୍ଦ ଚନ୍ଦ୍ର ପହି

# ସପ୍ତମ ଦୃଶ୍ୟ

(ରେଲୱେ ପ୍ଲାଟଫର୍ମ । ଗୋଟିଏ ବେଞ୍ଚରେ ବସିଛନ୍ତି ଗଗନ ଓ ସମର ।)

ସମର : ଗଗନବାବୁ ! ଦେଖ ସବୁ ଜିନିଷ ଠିକ୍ ଠାକ୍ ରହିଲା ନା ନାହିଁ ।

ଗଗନ : ହଁ ସବୁ ଠିକ୍ ଅଛି । ବ୍ୟାଗ ତିନିଟାତ ଅଛି । ଆଟାଚି ବି ଅଛି । ଆଚ୍ଛା ସେ ପ୍ୟାକେଟ୍‌ଟା ?

ସମର : କୋଉ ପ୍ୟାକେଟ୍ ?

ଗଗନ : ସେଇଟାମ, ଯୋଉଟା ବୃନ୍ଦାବନବାବୁଙ୍କ ଘରୁ ଆଜି ଆମେ ଆଣିଲେ ।

ସମର : ଧରଣୀମାମୁଙ୍କ ସାର୍ଟକନା ପ୍ୟାକେଟ୍‌ଟାତ ?

ଗଗନ : ହଁ, ସେଇ ପ୍ୟାକେଟଟା କାହିଁ ?

ସମର : ତମେ ପରା ଧରିଥିଲ ?

ଗଗନ : କାଇଁ ଏଠିତ କୋଉଠି ନାହିଁ ।

ସମର : କୋଉ ବ୍ୟାଗରେ ପଶି ଯାଇ ନାହିଁ ?

ଗଗନ : କାଇଁ, କୋଉଥିରେ ପଶିଚି ? ନା, ଏଥିରେ କୋଉଥିରେ ନାହିଁ ।

ସମର : ଆଉ କ'ଣ ବାଟରେ କୋଉଠି ସାଇକେଲ୍‌ରୁ ଖସି ପଡ଼ିଲା ?

ଗଗନ : ମୁଁ ହାତରେ ଧରିଥିଲି ଖସି ପଡ଼ିବ କେମିତି ? ମୁଁ କୋଉଠି ଥୋଇ ଦେଇଥିବି ।

ସମର : ଆମେ ତ ବୃନ୍ଦାବନ ବାବୁଙ୍କ ଘରୁ ସିଧା ଏ ପ୍ଲାଟଫର୍ମକୁ ଆସିଲେ, ଆଉ କୋଉଠି ଥୋଇବାର ପ୍ରଶ୍ନ ଉଠୁଛି କେଉଁଠୁ ?

ଗଗନ : ଆମେ ବାଟରେ କେବଳ ଗୋଟିଏ ଜାଗାରେ ଅଟକି ଥିଲେ ।

ସମର : କୋଉଠି ?

ଗଗନ : କୋରାଖଇ ଦୋକାନରେ ।

ସମର : ହଁ, ହଁ ମନେ ପଡ଼ିଲା । । କୋରାଖଇ କିଣିବାବେଳେ ତୁମେ ସେ ପ୍ୟାକେଟ୍‌ଟା ତା ଦୋକାନ ବେଢ଼ାରେ ଥୋଇଥିଲ ।

ଗଗନ : ମୁଁ ତରବର ହୋଇ ଚାଲି ଆସିଲି । ସେଇଠି ବୋଧହୁଏ ସେ

ପ୍ୟାକେଟ୍‌ଟା ରହି ଯାଇଛି ।

ସମର : ତୁମେ ବ୍ୟସ୍ତ ହୁଅନା । ମୁଁ ସାଙ୍ଗେ ସାଙ୍ଗେ ଯାଉଚି ସେ ଦୋକାନକୁ ଯିବି ।

ଗଗନ : ଏବେ ତ ଗାଡ଼ି ଟାଇମ୍ ହେଇଗଲାଣି ।

ସମର : ସେ ଦୋକାନରୁ ନେଇ ମୁଁ ମେସ୍‌ରେ ରଖିଥିବି । ତମେ ଆର ଶନିବାର ଦିନ ଗାଆଁକୁ ନବ ।

ଗଗନ : ହଉ, ତମେ ତାହେଲେ ଶୀଘ୍ର ଯା, ନହେଲେ ସେ ଲୋକ ଦୋକାନ ବନ୍ଦ୍ କରିଦେବ ।

ସମର : ହଉ, ମୁଁ ଯାଉଚି । (ପ୍ରସ୍ଥାନ

(ମଞ୍ଚ ଅନ୍ଧକାର)



# ଅଷ୍ଟମ ଦୃଶ୍ୟ

(ରେଲଗାଡ଼ିରୁ ଓହ୍ଲାଇ ସକାଳୁ ସକାଳୁ ଚାଲି ଚାଲି ଗାଆଁକୁ ଆସୁଛନ୍ତି ଗଗନବାବୁ । ଗାଆଁ ମୁଣ୍ଡ ବରଗଛ ପାଖରେ ଗଗନବାବୁଙ୍କ ଆସିବା ବାଟକୁ ଅପେକ୍ଷା କରି ବସିଛନ୍ତି ଧରଣୀମାମୁ ।)

ଗଗନ : ନମସ୍କାର ଧରଣୀମାମୁ ।

ଧରଣୀ : ନମସ୍କାର । ଗାଡ଼ି କ'ଣ ଆଜି ଲେଟ୍ ଥିଲାକି ?

ଗଗନ : ଗାଡ଼ିଟା କଟକରେ ଘଣ୍ଟେ ପଡ଼ିଗଲା । ତମେ ଏତେ ସକାଳୁ ଗାଆଁ ମୁଣ୍ଡଟାରେ ବସିଛ କାହିଁକି ? କ'ଣ କିଛି କାମ ଥିଲା ?

ଧରଣୀ : ନାଇଁ ଯେ... ଏଇ ତୁ ଆଜି ଆସିବୁ ବୋଲି କହିଥିଲୁ ତ, ରାତି ପାହାନ୍ତାଟାରେ ନିଦ ଭାଙ୍ଗିଗଲା । ଆଉ ନିଦ ହେଲା ନେଇଁ । ମୁଁ ଚାଲ ଚାଲ ହେଇ ଚାଲି ଆସିଲି ।

ଗଗନ : କ'ଣ ପାହାନ୍ତାରୁ ମତେ ଏଇଠି ଅପେକ୍ଷା କରିଛ ?

ଧରଣୀ : ଆରେ ଗଗନ ! ତୁ ଆମ ବୃନ୍ଦାବନର ବସା ପାଇଲୁ ?

ଗଗନ : ସେଥିପାଇଁ କମ ହଇରାଣ ହେଇଚି ?

ଧରଣୀ : ପାଇଲୁ ନା ନାଇଁ ?

ଗଗନ : ହଁ ପାଇଲି ଆଉ ତମ ଚିଠି ତାଙ୍କୁ ଦେଲି ।

ଧରଣୀ : ଆମ ବୃନ୍ଦାବନ କ'ଣ କହିଲା ?

ଗଗନ : ଯାହା କୁହ ଧରଣୀମାମୁ ବୃନ୍ଦାବନବାବୁ ଜଣେ ଭାରି ଭଲ ଲୋକ । ଯେମିତି ଶୁଣିଲେ ମୁଁ ତାଙ୍କ ମାମୁଘର ଗାଆଁରୁ ଆସିଚି ବୋଲି, ଖୁସିରେ ବିଭୋର ହେଇଗଲେ । ଆମ ଗାଆଁ କଥା, ସ୍କୁଲ କଥା ବାବାଜି ପୋଖରୀ କଥା, ରାଣିମନ୍ଦି ପୋଖରୀ କଥା ପଚାରିଲେ ।

ଧରଣୀ : ମୋ କଥା କିଛି ପଚାରୁ ଥିଲା ?

ଗଗନ : ତୁମ କଥା, ତୁମ ଘର କଥା । ସବୁ ଗୋଟେ ଗୋଟି କି ପଚାରିଲେ । ସିଏ ଏତେ ବଡ଼ ଲୋକ କିନ୍ତୁ ତାଙ୍କର ଗର୍ବ ଅହଂକାର ଟିକେ ନାହିଁ । ତାଙ୍କ ସ୍ତ୍ରୀ ମଧ୍ୟ ଭାରି ମେଳାପି ।

ଧରଣୀ : ମୋ ଭଣଜାବୋହୂକୁ ଦେଖିଲୁଟି ? ମୋ କଥା କ'ଣ

କହୁଥିଲା ?

ଗଗନ : ତମ ଭଲ ମନ୍ଦ କଥା ପଚାରୁଥିଲେ ।

ଧରଣୀ : ଆମ ବୃନ୍ଦାବନ ତୋ ହାତରେ ମୋ କମିଜି କନା ଦେଇଚି ନା ନାହିଁ ।

ଗଗନ : ହଁ, ମତେ କହିଲେ - ଆପଣ ଗାଆଁକୁ ଯିବାଦିନ ଆମବସାକୁ ଟିକେ ଆସିବେ । ମୁଁ କିଛି ଜିନିଷ ଦେବି ନେଇକି ମୋ ଧରଣୀମାମୁଙ୍କୁ ଦେଇଦେବେ ।

ଧରଣୀ : କାଇଁ କ'ଣ ଦେଇଚି ମୋ ଭଣଜା ଦେଲୁ ।

ଗଗନ : ମୋ ବାକ୍ସ ଉପରେ ଥୁଆ ହେଇଚି ।

ଧରଣୀ : କାଇଁ, କୋଉଠି ? କୋଉ ବାକ୍ସ ଉପରେ ଅଛି, ତୁ ତ ବେଗ ତିନିଟା ଆଉ ଗୋଟେ ଆଟାଚି ଧରିଚୁ, ବାକ୍ସ କାଇଁ ? ଏଇ ଆଟାଚିରେ ରଖିଚୁ ?

ଗଗନ : ନାଇଁ, ନାଇଁ ଏଠି ନାହିଁ । ଭୁବନେଶ୍ୱରରେ ଆମ ମେସ୍ ଘରେ ମୋ ବାକ୍ସ ଉପରେ ତୁମ ଜାମାକନା ପ୍ୟାକେଟ୍‌ଟା ଥୁଆ ହେଇଚି । ମୋର ମନେ ନାହିଁ । ଗାଡ଼ି ଟାଇମ ହେଇଗଲା, ମୁଁ ତରବର ହେଇ ଚାଲି ଆସିଲି । ଗାଡ଼ିରେ ମୋର ମନେ ପଡିଲା । କିନ୍ତୁ ସେତେବେଳକୁ କିଛି କରି ହେଲାନେଇଁ ।

ଧରଣୀ : ତୋର ସବୁ ଜିନିଷ ମନେ ପକାଇ ଆଣିଲୁ ଖାଲି ମୋ ଜିନିଷଟା ଛାଡ଼ି ଦେଇ ଆସିଲୁ ?

ଗଗନ : ମନ ଦୁଃଖ କରନା ଧରଣୀମାମୁ, ମୁଁ ଆଉ ପନ୍ଦର ଦିନ ପରେ ଖାସ୍ ତୁମରି ପାଇଁ ପୁଣି ଥରେ ଗାଆଁକୁ ଆସିବି । ତମ ଜିନିଷ ଆଣି ତୁମକୁ ଦେବି ।

ଧରଣୀ : କି କନା ଦେଇଥିଲା ଆମ ବୃନ୍ଦାବନ ? ସୂତା ନା ଟେରିକଟ୍ ?

ଗଗନ : ସିଏ ଗୋଟେ ଖବର କାଗଜରେ ଗୁଡ଼େଇକି ଦେଇଥିଲେ, ମୁଁ ତାକୁ ଫିଟେଇକି ଦେଖି ନେଇଁ ।

ଧରଣୀ : ଦେଖିନଉଁ ?

ଗଗନ : ହଁ, ମନେ ପଡ଼ିଲା । ଆମ ମେସ୍‌ର ଗୋଟେ ସାଙ୍ଗ ସେ ପ୍ୟାକେଟ୍ ଫିଟେଇକି ଦେଖିଥିଲା । ସିଏ କହୁଥିଲା - ପଲିଷ୍ଟର କନା ବୋଲି ।

ଧରଣୀ : କ'ଣ ଭାରି ଦାମିକା କନା ?

## ମୁହଁସଂଜ : ୧୦୪

ଗଗନ : ବୃନ୍ଦାବନବାବୁଙ୍କ ଷ୍ଟାଟସ୍ ଯାହା, ସିଏ କ'ଣ କେବେ ଅଳ୍ପ ଦାମ୍‌ର କନା କିଣିବେ ? ତା ଛଡ଼ା ତୁମ ଭଣଜା ବହୁତିର ରୁଚି ଭାରି ଭଲ ।

ଧରଣୀ : ତୋର ଭଲ କି ମନେ ଅଛି ଯେ ତୁ ବାକ୍ସ ଉପରେ ଥୋଇକି ଆସିତୁ । ଏତେ ଗୁଡ଼େ ବ୍ୟାଗ ଆଣିଚୁ ତା ଭିତରେ କୋଉଠି ରହି ଯାଇ ନେଇଁ ତ ?

ଗଗନ : ନାଇଁ, ଏଥିରେ ନାହିଁ ।

ଧରଣୀ : ତୁ ଭଲ କି ଦେଖିଲୁ ତ ?

ଗଗନ : ତମେ ଆଉ ଥରେ ଦେଖୁନା । ଏ ବ୍ୟାଗଟାରେ ତ ସର୍ଫ, ସାବୁନ୍, ଚିରା, ପୋସ୍ତ, ସୋରିଷ ତେଲ । ଆଉ ଏ ବ୍ୟାଗଟାରେ କୋରାଖଇ, ନଡିଆ ଚାରିଟା, ଦିଆସିଲି ଡର୍ଜନେ । ଆଉ ଏ ପ୍ଲାଷ୍ଟିକ ବ୍ୟାଗଟାରେ ମୁଗଡ଼ାଲି ଚାରି କିଲୋ, ମଟର କିଲେ ଆଉ ବୁଟଡ଼ାଲି ଦି କିଲୋ ।

ଧରଣୀ : ଆଉ ସେ ଆଟାଚିଟାରେ ?

ଗଗନ : ଫିଟେଇ ଦଉଚି ଦେଖୁନା । ଏଥିରେ ମୋର ହଳେ ଇସ୍ତ୍ରୀକରା ଡ୍ରେସ୍, ଲୁଙ୍ଗି, ଟାଉଏଲ୍, ବ୍ରସ, ପେଷ୍ଟ, ବହି ଦିଖଣ୍ଡ ।

ଧରଣୀ : ତୋ ମେସ୍‌ରେ ବାକ୍ସ ଉପରେ ଥୋଇ ଦେଇ ଆଇଲୁ କିଏ ନେଇ ଯିବ ନେଇଁ ?

ଗଗନ : ନାଇଁ, ଆମ ମେସ୍‌ରେ ମତେ ଛାଡି ଆଉ ତିନିଜଣ ଅଛନ୍ତି । ସେମାନେ ରଖିଥିବେ ।

ଧରଣୀ : ତମ ମେସ୍‌ରେ ଜଣେ ପିଅନ କିଏ ରୋଷେଇ କରୁଥିଲା ? ତା ହାବୁଡ଼ରେ ପଡ଼ିଥିଲେ ସିଏ ନେଇ ଯାଇଥିବ ।

ଗଗନ : ନା, ସିଏ ସେମିତି ନୁହଁ । ସେ ଦାୟିତ୍ୱ ମୋର । ମୁଁ ଆର ଥର ଆସିଲେ ତମେ ମୋଠୁ ତମ ସାର୍ଟକନା ନେବ ।

ଧରଣୀ : ଆମ ଗାଆଁ ନଟିଆ ଦରଜିକୁ ମୁଁ ମାପ ଦେଇଥିଲି । ତୁ କନା ଦେଇଥିଲେ ସିଏ କନା କାଟିକି ସାଙ୍ଗେ ସାଙ୍ଗେ ସିଲେଇ କରି ଦେଇଥାନ୍ତା । ମୁଁ କାଲି ସେଇ କାମିଜି ପିନ୍ଧି ତୋ ସାଙ୍ଗରେ ଭୁବନେଶ୍ୱର ଯାଇଥାନ୍ତି ।

ଗଗନ : କ'ଣ କରିବା ? ମୋର ଭୁଲ ହୋଇଗଲା । ଆଉ ପନ୍ଦରଟା ଦିନ ଅପେକ୍ଷା କରି ଯା ।

ଆନନ୍ଦ ଚନ୍ଦ୍ର ପତି

ଧରଣୀ : ଏଥର ମନେ ପକେଇ ନିଶ୍ଚେ ଆଣିବୁ । ହଉ ତୁ ଘରକୁ ଯାଆ, ଭୋକ ହେଉଥିବ ।

ଗଗନ : ମନ ଦୁଃଖ କରନା ଧରଣୀମାମୁ । ମୁଁ ଆର ଥରକ ନିଶ୍ଚୟ ତୁମ କାମିଜ କନା ଆଣିବି ।

ଧରଣୀ : ଆଜି ଖରାବେଳକୁ ଟିକେ ଆମ ଘର ଆଡେ ଆସିବୁ ଗଗନ ! ତୋ ମାଇଁ ଆଗରେ ଆମ ବୃନ୍ଦାବନ କଥା ଟିକେ କହିବୁ ।

ଗଗନ : ହଁ, ହଁ ! ତମେ ଘରେ ଥିବ ।

ଧରଣୀ : ତୁ ଆସିବୁ ମୁଁ ଥିବି ।

ଗଗନ : ହଉ ।



# ନବମ ଦୃଶ୍ୟ

(ଭୁବନେଶ୍ୱର ମେସ୍ ! ଗଗନ ଓ ସମର ଦୁହେଁ କଥାବାର୍ତ୍ତା ହେଉଥିଲେ ।)

ଗଗନ : ସମରବାବୁ ! ତମେ ଧରଣୀମାମୁଙ୍କ ସାନ୍ତ୍ୱନା ପାଇଲ ?

ସମର : ମୁଁ ସେଦିନ ରେଲଷ୍ଟେସନ୍‌ରୁ ଫେରିକି ସେ ଜୋତାଖୋଲ ଦୋକାନ ପାଖେ ଆସିଲି । କିନ୍ତୁ ମୁଁ ଫେରିବାବେଳକୁ ଦୋକାନ ବନ୍ଦ ହେଇଗଲାଣି ।

ଗଗନ : ତମେ ତାହେଲେ ସେ ଦୋକାନୀକୁ ଏଯାଏ ପଚାରି ନାହିଁ ?

ସମର : ତାପର ଦିନ ସକାଳୁ ପୁଣି ଗଲି । ଦେଖିଲି ଦୋକାନ ଖୋଲା ଅଛି କିନ୍ତୁ ସେ ଦୋକାନୀ ନାହିଁ । ତା ସାନଭାଇ ଦୋକାନରେ ଅଛି । ସେ ମନା କଲା । କହିଲା- ମୁଁ କାଲି ଦୋକାନରେ ନଥିଲି । ମୋ ଭାଇଥିଲେ । ତେବେ ଯଦି କିଏ ଆମ ଦୋକାନରେ କିଛି ଛାଡ଼ି ଯାଇଥାଆନ୍ତା, ଏଇ ଦୋକାନରେ ଥାଆନ୍ତା । ଏଠି କିଛି ନାହିଁ ।

ଗଗନ : ତା ଭାଇ ଦୋକାନରେ ଥିବାବେଳେ ଆଉ ଯାଇଥିଲ କି ?

[illegible] ବେଳକୁ ପୁଣି ଯାଇଥିଲି । ତଥାପି ସେ ଲୋକ [illegible] ତା ସାନ ଭାଇ ବସିଥିଲା । ମୁଁ ତାକୁ ପଚାରିଲି- ତମ [illegible] ଆଜି କେଉଁଦିନ ଆସିବେ ? ସିଏ କହିଲା ତାଙ୍କ ବାହାଘର [illegible] ପାଞ୍ଚଦିନ ଅଛି । ବାହାଘର ସରିବାର ଆଠ, ଦଶ ଦିନ ପରେ ସିଏ ଦୋକାନକୁ ଆସିବେ । କାଲିଠୁ ଆମ ଦୋକାନ ବନ୍ଦ ରହିବ ।

ତ ହେଲେ ଧରଣୀମାମୁଙ୍କ ସାନ୍ତ୍ୱନା ଆଉ ମିଳିବାର ଆଶା ଦେଖାଯାଉ ନାହିଁ ।

ଗଗନ : [illegible] ବି ସେମିତି ଜଣାପଡୁଛି । ମିଳିଥିଲେ ସେଇ ଦିନ ମିଳିଥାନ୍ତା । ବୋଧ ହୁଏ ତୁମେ ତା ଦୋକାନରେ ଛାଡ଼ି ଦେଇ ଚାଲିଯିବା ପରେ ଦୋକାନୀର ଦୃଷ୍ଟି ପଡ଼ିବା ଆଗରୁ ଆଉ କିଏ [illegible]ନେଇଯାଇଛି

[illegible] ଧରଣୀମାମୁଙ୍କୁ କହିଦେଇ ଆସିଚି [illegible] ସାନ୍ତ୍ୱନା ଦେଇଥିଲେ ମୁଁ [illegible] ଆସନ୍ତା ଥର [illegible]

ଆନନ୍ଦ [illegible] ଯାହି

ଖାଇବେକେ ନେବି ।

ସମର : ତମେ ମିଛ କାହିଁକି କହିଲ ? ସତ କଥାଟା କହି ଦେଲ ନାହିଁ ?

ଗଗନ : ମିଛ ଆଉ କ'ଣ କହିଲି ? ବୃନ୍ଦାବନବାବୁ ଯେଉଁ ପ୍ୟାକେଟ୍‌ଟା ଦେଇଥିଲେ ସେଥିରେ କ'ଣ ସାର୍ଟ କନା ନଥିଲା ?

ସମର : ସେ କଥା ସତ ଯେ....

ଗଗନ : ଆଉ ମିଛ କ'ଣ କହିଲି ?

ସମର : ଏଇ ତୁମେ ଯାହା କହିଲ ମେସ୍‌ରେ ଛାଡ଼ିଦେଇ ଆସିଚ ବୋଲି, ସେଇଟା ମିଛ ହୋଇଗଲା । ବୋଉଲାଇର ଦୋକାନରେ ଛାଡ଼ିଚ ବୋଲି କାହିଁକି କହିଲ ନାହିଁ ?

ଗଗନ : ଆରେ ଭାଇ, ମୁଁ ସେଦିନ ରାତି ଗାଡ଼ିରେ ଯିବିବୋଲି ଧରଣୀମାମୁ ଭାଚି ପାହାଚାକୁ ଗାଆଁ ମୁଣ୍ଡ ବରଗଛ ମୂଳେ ମୋ ଯିବାବାଟକୁ ଅନେଇ ବସିଥିଲେ । ଖଣ୍ଡେ ବାଟରୁ ମୋତେ ଦେଖି ଖୁସିରେ ତାଙ୍କ ମୁହଁ ଉଜ୍ଜଳ ଦିଶିଲା । ଦେଖା ହେବା ସାଙ୍ଗେ ସାଙ୍ଗେ ତାଙ୍କ ଚିଠି , ତାଙ୍କ ଭଣଜା ବୃନ୍ଦାବନ ଆଉ କାମିଜକନା କଥା ପଚାରିଲେ । ପୁଣି କହିଲେ - ମୁଁ ଦରଜିକୁ ଆଗତୁରା କାମିଜ ମାପ ଦେଇ ଦେଇଚି । ଏମିତି ଅବସ୍ଥାରେ କନାଟା ବୋଉଲାଇର ଦୋକାନରେ ଛାଡ଼ି ଦେଇ ଆସିଛି କହିଥିଲେ ସିଏ ଗୁରୁତର ଆଘାତ ପାଇ ନ ଥାଆନ୍ତେ ।

ସମର : ହଁ, ସେକଥା ସତ ।

ଗଗନ : ମୁଁ ଯେତେ ମନା କଲେ ବି ସିଏ ମୋର ସବୁ ବାକ୍‌ସ ଖୋଲି ଖୋଜି ଖୋଜି କି ଦେଖିବଲେ, ବାଟେ କୁଆଡେ ଦେଇଥିରେ ଉଡିଯାଇଥିବ ।

ସମର : ତା ହେଲେ କ'ଣ କରାଯିବ ?

ଗଗନ : କ'ଣ ଆଉ କରାଯିବ ? କାଟଟୋ ନିହାତି ପରିଶାର । ଦୁଇ ମିଟର ପଲିଷ୍ଟର କନା କିଣି ଆଉ ଥରେ ଗାଆଁକୁ ଯାଆଇକି ନେଇ ଧରଣୀମାମୁଙ୍କୁ ଦେବି । ଯା ଛଡା ଅନ୍ୟ ପନ୍ଥା ନାହିଁ ।

ସମର : କେତେ ଟଙ୍କା ପଡ଼ିବ ଜାଣିଛ ତ ?

ଗଗନ : ତେବେ ଦୁଇ ମିଟରକୁ ଦେଢ଼ଶହ ଟଙ୍କାରୁ କମ୍ ହେବ ନାହିଁ । ଯେତେ ହେଲେ ବି କିଣିକି ଦେବାକୁ ପଡ଼ିବ ।

ସମର : ମୁଁ ଭାବୁଛି ବୃନ୍ଦାବନବାବୁ, ତାଙ୍କ ମାମୁଙ୍କ ପାଇଁ ମିଟର ପ୍ରତି ଶହେ, ଶହେ କୋଡ଼ିଏ ତିରିଶ ଟଙ୍କାରୁ କମ୍ ଦେଇ କନା କିଣି ନ ଥିବେ ।

ଆନନ୍ଦ ଚନ୍ଦ୍ର ପତି

ମୁଁ ଦେଖିଛି ଅର୍ପିତା ଦେବୀଙ୍କୁ, ତାଙ୍କ ଘର ସାଜସଜା ଓ ଘର ଆସେ ଦେଖି ଯାହା ଅନୁମାନ କରୁଛି ହାରାହାରି ସେ କନା କୁଇନିଟରର ଦାମ ଦୁଇଶହ, ଅଢ଼େଇଶହ ହୋଇଥିବ ।

ଭଜନ : ତୁମ ଅନୁମାନ ଯଥାର୍ଥ, କିନ୍ତୁ ଏତେ ଟଙ୍କା ଖର୍ଚ୍ଚ କରିବା ମୋ ପରି ଜଣେ ସ୍ୱଳ୍ପ ବେତନ ଭୋଗୀ ତୃତୀୟ ଶ୍ରେଣୀ କର୍ମଚାରୀର ସାମର୍ଥ୍ୟ ବାହାରେ । ଦରମା ପାଇ ମୁଁ ଘରକୁ ଯାଇଥିଲି । ସଉଦାପତ୍ର ଆଉ ଟଙ୍କା ଏ ମାସରେ ଯାହା ଦେବା କଥା ସବୁ ଦେଇ ଆସିଛି । ମୋ ପାଖରେ ଯାହା ଅଛି କଷ୍ଟେ ମଷ୍ଟେ ମାସଟା ଚଳାଇ ନେବି । ଆଉ ଏଇଲେ ଦୁଇ ଶହ, ଅଢ଼େଇ ଶହ ଟଙ୍କା ଦେଇ ପଲିଷ୍ଟର କନା କିଣିବାକୁ ମୋ ପାଖରେ ଟଙ୍କା ଆସିବ କୁଆଡୁ ?

ସମର : ଏ ସବୁ ଆକସ୍ମିକ ବିପଦପାଇଁ ଆମ ପରି ସ୍ୱଳ୍ପ ଆୟକାରୀ ଚାକିରିଆ ହାତରେ ପାଣି ଆସିବ କୁଆଡୁ ? ଏ ସବୁ ପାଇଁ ଗୋଟେ ସୋର୍ସ ଧାର, ଉଧାର ନଚେତ ଅଫିସ୍‌ରେ ଥିବା ଡିପ୍ରେଣ୍ଟରୁ ମାସିକ ପାଞ୍ଚ ପଇସା ସୁଧର କରଜ ।

ଭଜନ : କିନ୍ତୁ ଆଉ ଗୋଟିଏ କଥା, ମୁଁ ଯେଉଁ କନାଟି ଧରଣୀମାମୁଙ୍କ ପାଇଁ କିଣିବି ସିଏତ ସାର୍ଟ ତିଆରି କରି ତାକୁ ପିନ୍ଧିକି ବୃନ୍ଦାବନବାବୁଙ୍କ ଘରକୁ ଆସିବେ ? ସେତେବେଳେ ବୃନ୍ଦାବନବାବୁ ନିଶ୍ଚୟ ଚିହ୍ନିବେ ଯେ ଏଟା ସିଏ ଦେଇଥିବା କନା ନୁହଁ । ସିଏ ଯଦି ସନ୍ଦେହ କରନ୍ତି ଯେ ମୁଁ ତାଙ୍କ କନାଟା ରଖି ଦେଇ ତାଙ୍କ ମାମୁଙ୍କୁ ଆଉ ଗୋଟେ କନା ଠକି ଦେଲି, ତାହେଲେ କଥାଟା ବଡ ଅସୁବିଧା ହେବ ।

ସମର : ତାହେଲେ ଆଉ ଗୋଟେ କାମ କଲେ ହୁଅନ୍ତା ।

ଭଜନ : ଆଉ କି କାମ ?

ସମର : ବୃନ୍ଦାବନବାବୁଙ୍କୁ ସତ କଥାଟା କହି ଦେଇ ତାକୁ ପଚାରିଲେ ହେବ, ସିଏ କେଉଁ ଦୋକାନରୁ ତାଙ୍କ ମାମୁଙ୍କ ପାଇଁ କନା କିଣିଥିଲେ ଆଉ କି ପ୍ରକାର କନା କିଣିଥିଲେ । ଆମକୁ ତାହା ସିଏ କହିଦେଲେ ଆମେ ସେଇ ଦୋକାନରୁ ସେଇ କନା କିଣି ଆଣିବା ।

ଭଜନ : ନା, ଏଟା ଭଲ ହେବନାହିଁ । କନାଟା ଆମେ ହଜାଇ ଦେଇଛେ ଜାଣିଲେ ସେ ଭାବିବେ ଏଗୁଡ଼ା ଦାୟିତ୍ୱହୀନ ଲୋକ । ତାଛଡା କନାଟା ହଜି ଯାଇଛି ବୋଲି ସିଏ ଆଉ ଗୋଟେ କନା ନିଜେ କିଣି ଦେଇ ପାରନ୍ତି ।

ଆନନ୍ଦ ଚନ୍ଦ୍ର ପତି

ସମର : ତାହେଲେ ଆଉ ଗୋଟେ କାମ କରାଯାଇ ପାରିବ ।

ଗଗନ : କ'ଣ କରାଯାଇ ପାରିବ ?

ସମର : ବୃନ୍ଦାବନବାବୁଙ୍କୁ କହିବା- ଆଜ୍ଞା ସେ କନାଟା ଅତି ସୁନ୍ଦର । ସେମିତିଆ କନାରେ ସାର୍ଟ କରିବା ପାଇଁ ଆମର ଇଛା । କିନ୍ତୁ ସେ କନାଟା କେଉଁ ଦୋକାନରେ ମିଳୁଛି ଆମେ ଜାଣି ପାରୁନାହୁଁ । ଦୟାକରି ତାଇଚୁ ଆମ ପାଇଁ ସେପରି କନା ଦୁଇ ମିଟର କିଣିବା ।

ଗଗନ : ବୃନ୍ଦାବନବାବୁ ଖୁବ୍ ଚତୁର ଲୋକ । ଆମର ଏପରି କଥାରୁ ସିଏ ପ୍ରକୃତ କଥାଟା ଠଉରାଇ ନେବେ ।

ସମର : ଆଉ ତାହେଲେ କ'ଣ କରିବା ?

ଗଗନ : ମୋ ମତରେ ଭଲ ପଲିଷ୍ଟର କନା ଦୁଇ ମିଟର କିଣି କି ମୁଁ ଧରଣୀମାମୁଙ୍କୁ ଦେଇଦେବି । ତାପରେ ସତ କଥାଟା ବୃନ୍ଦାବନବାବୁଙ୍କଆଗରେ କହି ତାଙ୍କଠୁ କ୍ଷମା ମାଗି ନେବା । ତାଙ୍କ ପରି ଜଣେ ଉଦାର ହୃଦୟର ଲୋକ ଆମ ଅସୁବିଧା ନିଶ୍ଚୟ ଉପଲବ୍ଧ୍ କରିବେ ।

ସମର : ହଁ, ସେଇଆ କଲେ ଚଳିବ । ତେବେ କେବେ କନା କିଣିବା ?

ଗଗନ : ମୁଁ ଆମ ଅଫିସରୁ ଟଙ୍କା ପଇସା ଯୋଗାଡ କରେ । ମୁଁ ଗାଆଁକୁ ଯିବାତ ଏଇନେ ଦଶ ବାରଦିନ ଡେ଼ରି ଅଛି । ମୁଁ ଗାଆଁକୁ ଯିବା ଆଗ ଦିନ ବଜାରରୁ କନାଟା କିଣିବା ।

ସମର : ହଉ, ଯା' ମୁହଁ, ହାତ ଧୋଇହୁଅ । ଗାଆଁରୁ ସିଧା ଆସି ଅଫିସ୍ କରିଥିବ ।

ଗଗନ : ପାର୍ଥବାବୁ ଆଉ ତପନବାବୁ କ'ଣ ଏଯାଏ ଅଫିସରୁ ଫେରି ନାହାନ୍ତି ।

ସମର : ସେ ଦୁହେଁ ମଧୁକୁ ସାଙ୍ଗରେ ନେଇ ସୁବୁଦ୍ଧି ଦୋକାନକୁ ଯାଇଛନ୍ତି ।

ଗଗନ : ତମେ ପଖାଳ ଖାଇବ ନାହିଁ ?

ସମର : ମୁଁ ଭଜାଚୁଡ଼ା ଦିଇଟା ଖାଇ ଦେଇଚି ? ତମେ ଯା ଶୀଘ୍ର ପଖାଳ ଖାଇ ନିଅ, ନହେଲେ ପାର୍ଥବାବୁ ଆସିଲେ ତୁମେ ପଖାଳ ପାଇବ ନାହିଁ ।

ଗଗନ : ଠିକ୍ ଅଛି, ମୁଁ ତାହେଲେ ଯାଉଚି ଖାଇଦେବି ।



ଆନଂଦ୍ର ଚଂଦ୍ର ପହି

# ଦଶମ ଦୃଶ୍ୟ

(ଭୁବନେଶ୍ୱରର ମେସ୍ । ସମରବାବୁ ଓ ଗଗନବାବୁ ଆଲୋଚନା କରୁଥିଲେ ।)

ସମର : ସବୁଦିନ କୁଆଡ଼େ ବୁଲି ବୁଲି ଡେରିରେ ମେସ୍‌କୁ ଫେରୁଚ ? କଥା କ'ଣ ଗଗନବାବୁ ? ଆଜି କ'ଣ ବୃନ୍ଦାବନବାବୁଙ୍କ ଘରଆଡେ ଚାଲିଯାଇ ଥିଲ ନା କ'ଣ ? ଆଜି ବି କ'ଣ ଅର୍ପିତା ଦେବୀଙ୍କ ହାତ ତିଆରି ଚା, କଫି...

ଗଗନ : ନାହିଁ ସମରବାବୁ ! ଜଣେ ପୁରୁଣା ସାଙ୍ଗ ଦେଖା ହେଇଗଲା । ତା ସାଙ୍ଗରେ ଇନ୍ଦିରା ପାର୍କରେ ବସି ଗପ କରୁ କରୁ ଏତେ ଡେରି ହେଇଗଲା ।

ସମର : ତମେ ତେଣେ ଇନ୍ଦିରାପାର୍କରେ ବୁଲି ଘୁରିମାରୁଚ, ଏଣେ ତମ ଗାଆଁରୁ ତମ ଧରଣୀମାମୁ ଆସି ତମକୁ ଅପେକ୍ଷା କରି ବସିଚନ୍ତି ।

ଗଗନ : ଆଁ ! (ଚମକି ପଡ଼ିଲେ) ସତରେ କ'ଣ ଧରଣୀମାମୁ ଆସିଛନ୍ତି ?

ସମର : ତୁମେ ତାଙ୍କ ସାର୍ଟିଫିକେଟ ଦେବାରେ ଡେରିକଲ, ସିଏ ଆସିବେ ନେଇଁ ?

ଗଗନ : ଡେରି ହେଲା କେଉଁଠି ? ମୁଁ କହିଥିଲି ପନ୍ଦର ଦିନ ଭିତରେ ଯିବି । ମୁଁ ଗାଆଁରୁ ଆସିବା ମୋଟେ ବାର, ତେର ଦିନ ହେଇଚି । ଆଚ୍ଛା ଧରଣୀମାମୁ କାହାନ୍ତି ? କେତେ ବେଳୁ ଆସିଲେଣି ?

ସମର : ପାଞ୍ଚଟା ବେଳୁ ଆସି ତୁମକୁ ଅପେକ୍ଷା କରି ବସିଚନ୍ତି ।

ଗଗନ : କାଇଁ, କୁଆଡେ ଗଲେ ?

ସମର : ସେଇ ଘର ଭିତରେ ବସିଛନ୍ତି ।

ଗଗନ : କାଇଁ ଏ ଘର ଭିତରେ ତ କେହି ନାହାଁନ୍ତି ।

ସମର : ହେଇ ସେଇଠି ।

ଗଗନ : କାହିଁ କୋଉଠି ?

ସମର : ସେଇଠି, ତମ ଖଟ ତଳେ ବସିଛନ୍ତି ।

ଗଗନ : ବାକ୍ସ ତଳେ, ମାନେ ?

ସମର : (ହସିଲେ) ମାନେଟା କ'ଣ ହୋଇପାରେ ଚିନ୍ତି ଭାବି ପାରୁନା ?

ଗଗନ : ନା । ମୁଁ ଚିନ୍ତି ଭାବି ପାରୁ ନାହିଁ । ବାକ୍ସ ତଳେ ଧରଣୀମାମୁ କେମିତି ବସିବେ ?

ସମର : (ହସିଲେ) ଧରଣୀମାମୁଙ୍କ ଚିଠି ଆସିଛି । ସେ ଚିଠିଟା ମୁଁ ତମ ବାକ୍ସ ତଳେ ରଖି ଦେଇଛି ।

ଗଗନ : ସତରେ ସମରବାବୁ ! ମୁଁ ତମ କଥାରେ ଚମକି ପଡିଥିଲି । ଦେଖ ଦେଖ ଧରଣୀମାମୁ କ'ଣ ଲେଖିଛନ୍ତି ?

ସମର : ନିଅ ପଢ଼ । (ବାକ୍ସ ତଳୁ ଚିଠିଟା ଆଣି)

ଗଗନ : (ଚିଠି ପଢ଼ିଲେ) ବାବୁ ଗଗନ ! ମୋର ସ୍ନେହ ନେବୁ । ମୁଁ ପରମେଶ୍ୱରଙ୍କ କୃପାରୁ ସପରିବାର ଭଲଅଛି । ତୁ ପରମେଶ୍ୱରଙ୍କ କୃପାରୁ ସେଠାରେ ଭଲରେ ଥିବୁ । ତୁ ଆସିଲା ଶନିବାର ରାତି ଗାଡ଼ିରେ ଗାଆଁକୁ ଆସିବୁ ବୋଲି କହିଥିଲୁ । ମୁଁ ତୋ ଆସିବା ବାଟକୁ ଅନେଇଁ ରହିଲି । ଏଥର ଗାଆଁକୁ ଆସିବା ବେଳେ ଆମ ବୃନ୍ଦାବନ ଦେଇଥିବା ଜାମିଜି କନା ଖଣ୍ଡକ ମନେ ପକାଇ ନିଶ୍ଚେ ଆଣିବୁ । ତୋର କାଳେ ଆର ଥର ପରି ମନେ ନପଡ଼ିବ, ସେଥିପାଇଁ ଏ ଚିଠି ଲେଖିଲି ଖୋଲେ କାମ କରିବୁ, ତାହେଲେ ଆଉ ମୋଟେ ଭୁଲ୍ ହେବ ନାହିଁ । ତୁ ତୋ ଆଟାଚିଟା ତ ନିଶ୍ଚୟ ଗାଆଁକୁ ଆଣିବୁ ? ମୋ ଚିଠି ପାଇବା ସାଙ୍ଗେ ସାଙ୍ଗେ ମୋ ଜାମିଜି କନାଟା ତୋ ଆଟାଚିରେ ପୂରେଇ ଦବୁ । ଆସିବାବେଳେ ଆଉ ଭୁଲି ଯିବାର ବାଟ ନଥିବ । ଏଥର ଯେମିତି ହଉ ମୋ ଜାମିଜି କନାଟା ଆଣିବୁ । ମୁଁ ଦରଜିକୁ ମାପ ଦେଇ ସାରିଛି । ତୋ ଆସିବା ବାଟକୁ ଅନେଇଁ ରହିଲି ।

ଇତି

ତୋର ଧରଣୀମାମୁ ।

ସମର : ତାହେଲେ ଆଉ ଡେରି ନକରି ଆଟାଚି ଖୋଲି ସାର୍ଟକନାଟା ରଖି ଦିଅ ।

ଗଗନ : ହଁ, ମୁଁ ସେଇଆ ଭାବୁଛି ।

ଅଜେନ୍ଦ୍ର ଚନ୍ଦ୍ର ପତି

ସମର : ପନ୍ଦରି ଦିନ ପରା ଗାଆଁକୁ ଯିବ ?

ଗଗନ : କାଲି ତାହେଲେ ଅଫିସ ଛୁଟି ପରେ ବଜାରକୁ ଯିବା । ତୁମେ ତୁମ ଅଫିସ ଆଗ ଛକରେ ଅପେକ୍ଷା କରିଥିବ, ମୁଁ ପାଞ୍ଚଟାରୁ ପାଞ୍ଚଟା ପନ୍ଦର ମିନିଟ୍ ଭିତରେ ସେଠି ଯାଇ ପହଞ୍ଚିବି । ଦୁହେଁ ସାଙ୍ଗ ହୋଇ କିଣିବାକୁ ଯିବା ।

ସମର : ଆଚ୍ଛା ଗଗନବାବୁ ! ତମେ ଆଉ କେବେ ସେ କୋରାଖଇ ଦୋକାନ ଯାଇଥିଲ ?

ଗଗନ : ଅତି କମ୍‌ରେ ପାଞ୍ଚ ଥର ଯାଇଛି । କିନ୍ତୁ ସବୁଥର ଦୋକାନଟି ବନ୍ଦ ଥିବାର ଦେଖିଛି ।

ସମର : ମୁଁ ବି ଅନେକ ଥର ଯାଇଛି । ଦୋକାନଟି ସେଇ ଦିନଠୁ ବନ୍ଦ ଅଛି ।

ଗଗନ : ସେ କନା ମିଳିବା ଆଶା ମୁଁ ପୂରା ଛାଡ଼ି ଦେଇଛି । ଠିକ୍ ଅଛି ଆମେ କାଲି କନା କିଣିଦେବା । ମନେ କରି କାଲି ପାଞ୍ଚଟା ପରେ ତମେ ଟିକେ ତମ ଅଫିସ ଛକରେ ଅପେକ୍ଷା କରିଥିବ ।

ସମର : କାଲି ଅଫିସ୍ ଯିବା ବେଳେ ମୋତେ ଟିକେ ମନେ ପକାଇ ଦେବ ।

ଗଗନ : ଠିକ୍ ଅଛି । ମନେ ପକାଇ ଦେବି ।



# ଏକାଦଶ ଦୃଶ୍ୟ

(ଧରଣୀମାମୁଙ୍କ ଘର । କଥାବାର୍ତ୍ତା ହେଉଥିଲେ ଧରଣୀମାମୁ ଓ ତାଙ୍କ ସ୍ତ୍ରୀ ଜାନକୀ ।)

ଜାନକୀ : ହେଇଟି ଶୁଣୁଚି ?

ଧରଣୀ : କ'ଣ ?

ଜାନକୀ : ବୃନ୍ଦାବନ କାମିଜିକନା ଦବାକଥା ତମେ ଆଉ କାହା ଆଗରେ କହିଚ ?

ଧରଣୀ : ଯାହା ଆଗରେ କହିଲି ତୋର କ'ଣ ଗଲା ?

ଜାନକୀ : ଲୋକଙ୍କ ଘରକୁ ଲାଖ ଲାଖ ଟଙ୍କାର ଦରବ ଆଉଚି ତାର ଗନ୍ଧ ବାସନା କେହି ପାଉ ନାହାଁନ୍ତି, ବୃନ୍ଦାବନ ପଠେଇଥିବା କନା ଆମ ଘରେ ନ ପହଞ୍ଚୁଣୁ ଗାଆଁ ସାଇରେ ହାଟ ବସିଲାଣି । ତମେ ତ ସବୁ କଥାରେ ଦଣ୍ଡିକିରି ମାଛ ପରି ଫୁଟୁ ଫୁଟୁ ।

ଧରଣୀ : ସମସ୍ତେ ଜାଣିଲେ କ'ଣ ମତେ ଫାଶି ଦେଇ ଦେବେ ? ମୁଁ କ'ଣ ଚୋରିକରି ଆଣିଚି ? ନା ଡକେଇତି କରି ଆଣିଚି ? ହକ ମୋ ଭଣଜା ଦେବ ମୁଁ ନେବି । ଏ ଗାଆଁବାଲାଙ୍କର କଣ ଗଲା ? ତୁ କାହାଠଉଁ ଶୁଣିଲୁ ?

ଜାନକୀ : ସେଇ ରମାମାଆ କହୁଥିଲା ।

ଧରଣୀ : କ'ଣ କହୁଥିଲା ?

ଜାନକୀ : କହୁଥିଲା ବୃନ୍ଦାବନ କୁଆଡ଼େ ଭୁବନେଶ୍ୱରରୁ କାମିଜିକନା ଆଉ ଶାଢ଼ି ପଠେଇଚନ୍ତି ।

ଧରଣୀ : ଶାଢ଼ି କଥା କିଏ କହିଲା ?

ଜାନକୀ : ଶାଢ଼ି କଥା କିଏ କାଇଁକି କହିବ ? ତା କଥା ତମେ ଜାଣିନୀ ? ସିଏ ଟିକେ କଥାକୁ ନଗେଇ ଯୋଟେଇ ଏହେଁ ବଡ଼ କରି ଦବ । ମତେ ପଚାରିଲା ମୁଁ ନାହିଁ କଲି । ଶାଢ଼ି ଦେଇ ନାହାନ୍ତି । ଖାଲି କାମିଜ କନା କ'ଣ ଗଗନ ହାତରେ ଦେଇଥିଲେ ସିଏ ତା ମେସ୍ ଘରେ ଛାଡ଼ି ଦେଇ ଆସିଚି । ସେଇଠୁ ସିଏ କ'ଣ କଇଲା ଶୁଣିବ ?

ଧରଣୀ : କ'ଣ କହିଲା ?

ଜାନକୀ : ତମର ଭାଇ ଭୁବନେଶ୍ୱର ଗଲେ ବୃନ୍ଦାବନ ତୋ ପେଇଁ ଶାଢ଼ି ଦବ ନେଇଁ ?

ଧରଣୀ : ସିଏ ଯାହା କହିଲା ସେଟା ଏକବାର ମିଛ ନୁହଁ । ମୁଁ ଭୁବନେଶ୍ୱର ଗଲେ ଭଣଜାବୋହୂ ନିଶ୍ଚେ କହିବ- ମାଇଁଙ୍କି ଟିକେ ଆଣିଲ ନେଇଁ ? ମୁଁ କହିବି.....

ଜାନକୀ : ନାଇଁ ନାଇଁ ତମେ କିଛି କଇବ ନେଇଁ । ମୋର ଶାଢ଼ି କ'ଣ ହବ ? ମୁଁ ତ ସବୁବେଳେ ଘରେ ଅଛି । କୁଆଡେ ପଦାକୁ ଯାଉଚି ଯେ ଭଲ ଶାଢ଼ି ନହେଲେ ଚଳୁ ନେଇ । ତମେ ଗଗନ ପାଖକୁ ଚିଠି ଦେଲଟି ?

ଧରଣୀ : ଚିଠି ଦବା କଥା ତୋର ଆଜି ମନେ ପଡିଲା ? ମୁଁ ଆଜି ଲେଖିଲେ ସିଏ ପାଇବ କୋଉଦିନ ? ସିଏ ପରା କାଲି ଭୋରୁ ଭୋରୁ ଗାଆଁରେ ପହଞ୍ଚିବ ?

ଜାନକୀ : ତମେ ତାହେଲେ ଚିଠି ଦେଇନା ? ତମଦେଇ କିଛି କାମ ହେଇଚି ନା ହବ ? ମୁଁ ଯେତିକି ବତେଇବି ସେତିକି ?

ଧରଣୀ : ବେଶି ଗୁରେ ଫୁଟାଣି ଦେଖାନା । ମୁଁ ଯେତିକି ଭଲ ସେତିକି ଖରାପ ।

ଜାନକୀ : ତମେ ଏମିତି ରାଗୁଚ କାଇଁକି ?

ଧରଣୀ : ରାଗିବି ନେଇଁ ? ତୁ ସେମିତି କହୁଚୁ ।

ଜାନକୀ : ତମେ ତାହେଲେ ଚିଠି ଦେଇଚ ?

ଧରଣୀ : ତୁ ଗଗନ ପାଖକୁ ଚିଠି ଦେବା କଥା ଯୋଉଦିନ କହୁଥିଲୁ, ତା ଦିନକ ଆଗରୁ ମୁଁ ଚିଠି ଦେଇ ସାରିଚି । ମୋ ଚିଠି ସିଏ ପାଇ ସାରିବଣି ।

ଜାନକୀ : ସେଇ କଥା ତ କହିବ, ଏତେ ରାଗୁଚ କାଇଁକି ? ବୃନ୍ଦାବନ ଯୋଉ କନାଟା ଦେଇଚନ୍ତି ସେ କନାଟା ଭାରି ଦାମିକା ବୋଲି ଗଗନ କହୁଥିଲା ପରା ?

ଧରଣୀ : ଦାମିକା ହବ ନେଇଁ ? ସିଏ କ'ଣ ଏମିତି ସେମିତି ଚାକିରି କରିଚି ? ଗଗନ କହୁଥିଲା ସିଏ ଭାରି ବଡ଼ ଚାକିରି କରୁଚି ।

ଜାନକୀ : ମୁଁ କହୁଥିଲି.....

ଧରଣୀ : କ'ଣ କହୁଥିଲୁ ?

ଜାନକୀ : ଏତେ ଦାମିକା କନାଟା ଗୋଟେ ଭଲ ଦରଜି ଦେଖିକି ଦେଲେ ହୁଅନ୍ତା । ତମ ଗାଆଁ ନଟିଆଟା କ'ଣ ଜାଣେ କଇଲ ? ସିଏ କି କାମିଜି କରିବ ? କନାଟାକୁ କାଟି କୁଟି ଯଦି ଖରାପ କରିଦିଏ ?

ଧରଣୀ : ସେ କଥା ସତ ଯେ.... ହେଲେ ମୁଁ ତାକୁ ଆଗରୁ ମାପ ଦେଇ ଦେଇଚି ।

ଜାନକୀ : ମୁଁ କ'ଣ ମିଛରେ କହେ ତୁର୍‌ତୁରିଆ ?

ଧରଣୀ : ଦେଇ ତ ଦେଇଚି ଏଇଲେ କ'ଣ କରିବା ?

ଜାନକୀ : ମାପ ସିନା ଦେଇଚ, କନା ତ ଦେଇନା ? ଗଗନ କାଲି କନାଟା ଆଣିଲେ ତାକୁ ନେଇ ଭଲ ଦରଜୀ ଦେଖିକି ଚଣ୍ଡିଖୋଲ ଛକରେ ଦେଇ ଦିଅ ।

ଧରଣୀ : ନଟିଆଟା ମନ ଦୁଃଖ କରିବ ।

ଜାନକୀ : ସିଏ ମନ ଦୁଃଖ କଲେ କରୁ । ଏତେ ଦାମିକା କନାଟା ତାକୁ ଦେଲେ ସିଏ ଖରାପ କରିଦବ ।

ଧରଣୀ : ହଉ ହେଲା । ଚଣ୍ଡିଖୋଲ ଛକରେ ତିଆରି କରେଇ ଆଣିବି

ଜାନକୀ : ଆଜି କାଲିକା ପିଲାଙ୍କ କାମିଜି ପରି କରିବ ନେଇଁ । ଦିପଟରେ ଦିଇଟା ପାକିଟି ରଖିବ ।

ଧରଣୀ : ଆଉ ଛାତି ପାକିଟି ?

ଜାନକୀ : ସେଟା ନ ରଖିଲେ କେମିତି ହବ ?

ଧରଣୀ : ଦେଲୁ କ'ଣ ଦିଟା ଖାଇବାକୁ ଦେଲୁ । ମୁଁ ଯାଏ ବୋଧିଆକୁ ପଚାରେ, ସିଏ କାଲି ତା ସାଇକେଲ୍‌ଟା ଦେଲେ ମୁଁ ଚଣ୍ଡିଖୋଲ ଯିବି ।

ଜାନକୀ : ବୋଧିଆ ସାଇକେଲ କ'ଣ ଅଛି ? ସିଏ ପା ବିକିକି ଗୋଟେ ଗାଈ କିଣିଲା । ତମେ ନାହାକ ସାଇ ପଦିଆକୁ ମାଗୁନା ?

ଧରଣୀ : ପଦିଆର କ'ଣ ସାଇକେଲ ଅଛି ?

ଜାନକୀ : ମୁଁ ଦେଖିଛି ସିଏ କାଲି ଏଇପଟେ ଗୋଟେ ସାଇକେଲରେ ଯାଉଥିଲା

ଧରଣୀ : ହଉ, ତାହେଲେ ତୁ ଦେ କ'ଣ ଦିଟା ମୁଁ ଖାଇଦେଇ ଯାଏ ।

ଜାନକୀ : ଆଛା ତମେ ବୃନ୍ଦାବନ ଘରକୁ ଗଲାଦିନ କ'ଣ ନେଇକି ଯିବ ?

ଆନନ୍ଦ ଚନ୍ଦ୍ର ପହି

ଧରଣୀ : ଆମ ଘରେ କ'ଣ ଅଛି ଯେ ନେବି ?

ଜାନକୀ : ଆଉ କ'ଣ ଖାଲି ହାତରେ ଯିବ ?

ଧରଣୀ : ଆମ ଘର ଆରିସା ପିଠାକୁ, ବୃନ୍ଦାବନ ଭରି ଭଲ ପାଏ । କେଜିଏ ଦି କେଜି ଆରିସା କରି ଦେବ ମୁଁ ନେଇଯିବି ।

ଜାନକୀ : ଆରିସା କରିବା ପେଇଁ ଗୁଡ଼, ଘିଅ, ଅରୁଆଚାଉଳ ଦରକାର ।

ଧରଣୀ : ହରିଆକୁ ପଟାପଟି କରି ତାଠୁ ମୁଁ ଗୁଡ, ଘିଅ ଆଣିବି । ତୁ ଭଲ ଅରୁଆ ଚାଉଳ ଦି କିଲୋ କୋଉଠୁ ଧାର ଆଣି ପାରିବୁ ନେଇଁ ?

ଜାନକୀ : ସମସ୍ତଙ୍କ ଠଉଁ ତ ଧାର ଉଧାର କରିଚି, କାହାକୁ ଶୁଝି ନେଇ ଆଉ କିଏ ଦବ ?

ଧରଣୀ : ମୁଁ ବୃନ୍ଦାବନ ପାଖରୁ ଟଙ୍କା ଆଣିଲେ ସବୁ ଶୁଝି ଦବା ।

ଜାନକୀ : ହଉ ଦେଖିବା । ହେଇଟି ଆମ ଘନବାପାକୁ କହୁନ, ତାଙ୍କର ଏଇ ଆଠ ଦିନ ହେଲା ଅରୁଆ ଚାଉଳ କରିଚନ୍ତି ।

ଧରଣୀ : ହଉ, ଦେ ମତେ କ'ଣ ଖାଇବାକୁ ଦେ ମୁଁ ଗାଆଁ ଆଡ଼େ ଯାଏଁ ।

ଜାନକୀ : ଆସ ।

(ଦୁହେଁ ଆଗପଛ ହୋଇ ଅନ୍ୟ ବଖରାକୁ ଗଲେ ।)



# ଦ୍ୱାଦଶ ଦୃଶ୍ୟ

(ଗଗନବାବୁ ଓ ସମରବାବୁ ଦୁହେଁ ବଜାରକୁ ଆସିଛନ୍ତି ଜନା କିଣିବାକୁ । ସମୟସଂଧ୍ୟା ବେଳ । ସ୍ଥାନ ବଜାର ଯିବା ରାସ୍ତା ।)

ସମର : ଗଗନବାବୁ ! ଏମିତି ସିଧା ସିଧା ଚାଲିଯାଉଛ କୁଆଡ଼େ ? ସାର୍ଟକନା ପରା କିଣିବ ?

ଗଗନ : ଆଗରେ ସେଇ ଯୋଉ ଦୋକାନ ସାମ୍ନାରେ ନାଲି କାରଟା ଥୁଆ ହୋଇଛି ସେଠି ଆମ ଗାଆଁ ପାଖ ଗାଆଁର ଗୋଟେ ପିଲା ସେଲ୍ସ୍ ମ୍ୟାନ ଅଛି । ସେଇ ଦୋକାନକୁ ଯିବା ।

ସମର : ହଉ ଚାଲ, ସେଇ ଦେକାନକୁ ଚାଲ ।

ଗଗନ : ଆଚ୍ଛା ସମରବାବୁ ! ଚାହିଁଲ ସେ କୋରାଖଇ ଦୋକାନଟା ଆଜି ଖୋଲା ଥିଲା ପରି ଦେଖା ଯାଉଛି ।

ସମର : ହଁ, ହଁ ଆଜି ଖୋଲା ଅଛି । ଚାଲ ଦେଖିବା, ଯଦି ସେ ଲୋକ ଆଜି ଥିବ ତାକୁ ପଚାରିବା ।

ଗଗନ : ଆଉ ଅଯଥାଟାରେ କାହିଁକି ଯିବା ? ଏତେ ଦିନ ପରେ ପଚାରିଲେ ସିଏ ହସିବ ।

ସମର : ହସିବ କାଇଁକି ? ଭାରି ହସିଲା ବାଲା ସିଏ । ଆମେ ତ ତା'ସାନ ଭାଇକି ପଚାରିଛେ । ତାକୁ ତ ମୋଟେ ପଚାରିନା ।

ଗଗନ : ସେ କଥା ସତ ଯେ...

ସମର : ଆଉ ଯେ ପୁଣି କ'ଣ ?

ଗଗନ : ତୁମକୁ ତା ସାନ ଭାଇ ପରିଷ୍କାର ଭାବେ ନାହିଁ କରିଛି ତାଙ୍କ ଦୋକାନରେ କିଛି ପ୍ୟାକେଟ୍ ନାହିଁ । ଆଉ ବଡ଼ ଭାଇକୁ ପଚାରି ଲାଭ କ'ଣ ?

ସମର : ତୁମେ ଯାହା କହିଲ ଅବଶ୍ୟ ସେ କଥା ସତ । ତଥାପି ଜନାଟା କିଣିବା ପୂର୍ବରୁ କୋରାଖଇ ଦୋକାନୀକୁ ପଚାରି ଦେଲେ କ୍ଷତି କ'ଣ ହେବ ।

ଗଗନ : ହଉ ତାହେଲେ ଚାଲ !

(ଦୁହେଁ କୋରାଖଇ ଦୋକାନ ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ ।)



ଆନନ୍ଦ ଚନ୍ଦ୍ର ପତି

# ଶେଷଦୃଶ୍ୟ

(କୋରାଖଇ ଦୋକାନ । ଦୋକାନରୁ କିଛି ଦୂରରେ ଗଗନ ଓ ସମର ଠିଆ ହୋଇଛନ୍ତି ।

ସମର : ଦୋକାନରେ ତ ଅସଲ ଦେକାନୀ ଥିବା ପରି ଜଣାପଡୁଛି ।

ଗଗନ : ହଁ । ଏଇ ଲୋକଟା ତ ସେଦିନ ଥିଲା । ଆଚ୍ଛା କ'ଣ କେମିତି ପଚାରିବା ।

ସମର : ଏତେ ଡର କାହିଁକି ? ସିଧା ପଚାରିବା, ଆମେ ତମ ଦୋକାନରେ ଗୋଟିଏ ଖବର କାଗଜ ପୁଡ଼ିଆ ଛାଡ଼ି ଯାଇଥିଲୁ । ଅଛି ଯଦି ଦିଅ ।

ଗଗନ : ହଉ ଆସ ।

(ସମର ଓ ଗଗନ ଦୋକାନ ପାଖକୁ ଗଲେ ।)

ଦୋକାନୀ : କ'ଣ କୋରାଖଇ ନେବେ ? କେତେ ଦେବି ?

ଗଗନ : ନାଇଁ, ଆପଣଙ୍କୁ ଗୋଟେ କଥା ପଚାରିବାର ଥିଲା ।

ଦୋକାନୀ : କ'ଣ ପଚାରିବାର ଅଛି ପଚାରନ୍ତୁ ।

ସମର : ଆଜିକି ତେର ଚଉଦ ଦିନ ତଳେ ଆମେ ଦୁଇଜଣ ତମ ଦୋକାନକୁ କୋରାଖଇ କିଣିବାକୁ ଆସିଥିଲୁ ।

ଦୋକାନୀ : ଆପଣଙ୍କ ପରି ଅନେକ ଲୋକ ପ୍ରତିଦିନ କୋରାଖଇ କିଣୁଛନ୍ତି । ଆପଣ କିଣିଥିବେ । କ'ଣ ହେଲା ସେଠୁ ?

ସମର : ଆମେ ଦୁହିଁଙ୍କୁ ଚିହ୍ନି ପାରୁଛ ?

ଦୋକାନୀ : (ହସିଲା) ଆପଣତ ଖୁବ୍ ଅଜବ ଲୋକ । କେତେ ଲୋକ ମୋ ଦୋକାନକୁ ଆସୁଛନ୍ତି, ମୁଁ ଆପଣ ଦୁହିଁଙ୍କୁ କେମିତି ଚିହ୍ନିବି ?

ଗଗନ : ଆପଣଙ୍କ ବିଭାଘରର ଠିକ୍ ଦୁଇ ତିନି ଦିନ ପୂର୍ବରୁ ଆମେ ଆସିଥିଲୁ ।

ଦୋକାନୀ : ମୋ ବାହାଘର ?

ଗଗନ : ଆପଣ ଏମିତି ଆଶ୍ଚର୍ଯ୍ୟ ହେଉଛନ୍ତି କ'ଣ ? ଆପଣ କ'ଣ ଏଇ ଦଶ ବାର ଦିନ ତଳେ ବିବାହ କରି ନାହାନ୍ତି ?

ଦୋକାନୀ : ମୋ ବାହାଘର କଥା ଆପଣମାନେ ଜାଣିଲେ କେମିତି ?

ସମର : କାହିଁକି ? ଆପଣ କ'ଣ ଗୋପନ ବିବାହ କରିଛନ୍ତି ? ମାନେ ବାପା, ମାଆଙ୍କ ଅନିଛା ସତ୍ତ୍ୱେ, କୌଣସି ଜଣେ କିଶୋରୀକୁ ଭଲ ପାଇ କୌଣସି ମନ୍ଦିରରେ ମାଳା ବଦଳ କରି ବିବାହ କରିଛନ୍ତି ?

ଦୋକାନୀ : ଆପଣ ଏସବୁ କ'ଣ କହୁଛନ୍ତି ? ଆପଣମାନେ ସବୁ କିଏ ?

ଗଗନ : ଭିଜିଲାନ୍ସବାଲା କି ପୋଲିସ୍‌ବାଲା ନୁହଁ । ତୁମ ପରି ସାଧାରଣ ମଣିଷ ।

ଦୋକାନୀ : ମୁଁ ତ କିଛି ବୁଝି ପାରୁ ନାହିଁ ?

ଗଗନ : ମୁଁ ବୁଝାଇ ଦେଉଛି ଶୁଣନ୍ତୁ । ଆପଣ ଦୋକାନରେ ନଥିବା ବେଳେ ଅର୍ଥାତ ଆପଣ ଯେତେବେଳେ ବିବାହ ଉପଲକ୍ଷେ ଗାଆଁକୁ ଯାଇଥିଲେ ସେତେବେଳେ ଆମେ ଆପଣଙ୍କ ସାନ ଭାଇକୁ ପଚାରି ବୁଝି ସାରିଛୁ । ତେଣୁ ଆପଣ ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ଦୋକାନୀ : ମୁଁ ତ ଭାବିଥିଲି....

ସମର : କ'ଣ ଭାବିଥିଲ...?

ଦୋକାନୀ : ସତରେ ମୁଁ ଭାବିଥିଲି ଆପଣ ତୁହେଁ ଭିଜିଲାନ୍ସବାଲା ବା ହେଲେ ପୋଲିସ୍‌ବାଲା । ମୁଁ ଡରି ଯାଇଥିଲି ।

ସମର : (ହସି ହସି) କାହିଁକି ? ଆପଣଙ୍କର କିଛି ଦୋ ନମ୍ବରି ଧନ୍ଦା ଅଛି କି ?

ଦୋକାନୀ : ଦୋ ନମ୍ବରି ? ଦୋ ନମ୍ବରି ଧନ୍ଦା କ'ଣ ?

ସମର : ଏଇ ଗଞ୍ଜେଇ, ଅଫିମ, ହିରୋଇନ୍, ଡ୍ରଗସ୍ କି ବ୍ରାଉନସୁଗାର ?

ଦୋକନୀ : ଏସବୁ ବାଜେ ଧନ୍ଦା କରିବା ଲୋକ ମୁଁ ନୁହଁ ।

ଗଗନ : (ହଉ) ଆଉ ତା ହେଲେ ପୋଲିସ୍ କି ଭିଜିଲାନ୍ସବାଲାଙ୍କ ନାଆଁ ଶୁଣୁ ଶୁଣୁ ଏମିତି ଚମକୁଚ କାହିଁକି ?

ଦୋକାନୀ : ଯେତେ ଠିକ୍ ବାଟରେ ଚାଲିଲେ ବି ପୋଲିସ୍ ବାଲାଙ୍କୁ କାହାର ଭୟ ନାହିଁ ?

ଗଗନ : ହଉ ସେ କଥା ଛାଡନ୍ତୁ । ଆମେ ଗୋଟେ ନିହାତି ସିରିଅସ୍ କଥା ପଚାରିବାକୁ ଆସି ପରିବେଶଟାକୁ ନିହାତି ହ୍ୟୁମରସ କରି ପକାଇଲୁଣି ।

ଦୋକାନୀ : (ପୁଣି ଚମକିଭା) ସିରିଅସ୍ କଥା ?

ସମର : ନାଇଁ, ନାଇଁ ସିରିଅସ୍ ମୋଟେ ନୁହଁ । କଥାଟା ନିହାତି ମାମୁଲି ।

ଦୋକାନୀ : ତାହେଲେ ପଚାରନ୍ତୁ ।

ଗଗନ : ଆଜିକି ଦଶ, ବାରଦିନ ତଳେ ମୁଁ ଆଉ ସମରବାବୁ ଗୋଟିଏ ସାଇକେଲରେ ଆସି ଆପଣଙ୍କ ଦୋକାନରେ ପହଞ୍ଚିଲୁ । ସେତେବେଳକୁ ରାତି ଆଠଟା ହେବ । ଆମେ ଆପଣଙ୍କ ଦୋକାନରୁ କୋରାଖଇ କିଲେ କିଣିଲୁ ।

ସମର : ଆମ ଦିଜଣଙ୍କ କଥା ମନେ ପଡୁଚି ?

ଦୋକାନୀ : ନା, ମନେ ପଡୁ ନେଇଁ । ଏମିତି କେତେ ଲୋକ କିଣିବାକୁ ଆସୁଛନ୍ତି ।

ଗଗନ : ଗୋଟେ କାଗଜ ପ୍ୟାକେଟ ମୁଁ ଆପଣଙ୍କ ଏଇ ଦୋକାନ ବେଢ଼ାରେ ଏଇଠି ଥୋଇଥିଲି । ଆମେ କୋରାଖଇ ନେଇ, ତରବର ହୋଇ ଚାଲିଗଲୁ । ସେ ପ୍ୟାକେଟ୍‌ଟା ଆପଣଙ୍କ ଦୋକାନରେ ଛାଡ଼ି ଦେଇଗଲୁ ।

ଦୋକାନୀ : ସେ ପ୍ୟାକେଟ୍‌ରେ କ'ଣ ଥିଲା ?

ଗଗନ : ଗୋଟିଏ ପଲିଷ୍ଟର କନା ।

ସମର : ପଲିଷ୍ଟର ସାର୍ଟକନା ହୋଇପାରେ ନହେଲେ ଦାମିକା ଟେରିକଟ୍ ସାର୍ଟକନା । କିନ୍ତୁ ତାଠୁ ତଳକୁ ନୁହଁ ।

ଦୋକାନୀ : ସେଦିନ ଗୋଟିଏ ପ୍ୟାକେଟ୍ କେହି ଜଣେ ମୋ ଦୋକାନରେ ଛାଡ଼ି ଯାଇଛନ୍ତି । କିନ୍ତୁ ସେଟା ଆପଣଙ୍କର ନୁହଁ ।

ଗଗନ : ସେଟା ଆମର ନୁହଁ ।

ଦୋକାନୀ : ସେ ପ୍ୟାକେଟ୍‌ରେ ସାର୍ଟ କନା ନାହିଁ ।

ସମର : ଆଉ ତା ହେଲେ କ'ଣ ଅଛି ? ଟିକେ ଦେଖାଇଲେ ।

ଦୋକାନୀ : ବାଃ, ମୋତେ ଆପଣମାନେ କ'ଣ ବୋକା ବୋଲି ଭାବିଛନ୍ତି ?

ଗଗନ : କାଇଁକି, କ'ଣ ହେଲା କି ? ଏମିତି ରାଗୁଚ କାଇଁକି ?

ଦୋକାନୀ କହିଲିତ ସେ ଜିନିଷ ଆପଣଙ୍କର ନୁହଁ । ସେ ଜିନିଷ ଫେର ଦେଖାଇବି କାଇଁକି ? ଯଦି କିଏ କେବେ ଜିନିଷ ଛାଡି ଯାଏ, ତା ଜିନିଷ ଏଠି ନିରାପଦରେ ରହେ । ଦଶ ବରଷ ପରେ

ଆସିଲେ ବି ସଠିକ୍ ପ୍ରମାଣ ଦେଲେ ତା ଜିନିଷ ତାକୁ ଦିଆ ଯାଏ ।

ସମର : ମୁଁ ଆପଣଙ୍କ ସାନ ଭାଇକି ପଚାରିଥିଲି ସିଏ ମନା କରିଥିଲେ । ସିଏ କହିଲେ- ସେମିତି କିଛି ପ୍ୟାକେଟ କେହି ଛାଡ଼ି ଯାଇ ନାହାଁନ୍ତି ।

ଦୋକାନୀ : ସିଏ ତ ସେଦିନ ନଥିଲା, ସିଏ କେମିତି ଜାଣିବ ? ମୁଁ ପ୍ୟାକେଟ୍‌ଟାକୁ ଅନ୍ୟ ଆଡେ ରଖି ଦେଇଥିଲି । ତାକୁ ସେ କଥା କହିବାକୁ ମୁଁ ଭୁଲି ଯାଇଥିଲି ।

ଗଗନ : ଏବେ ସେ ପ୍ୟାକେଟ୍‌ଟା ଆପଣଙ୍କ ପାଖରେ ଅଛି ତ ?

ଦୋକାନୀ : ଅଛି । ସେ ପ୍ୟାକେଟ୍ ଭିତରେ କ'ଣ ଅଛି ନ କହିଲେ ସେଟା ଆପଣଙ୍କ ପ୍ୟାକେଟ୍ ବୋଲି ମୁଁ କେମିତି ଜାଣିବି ?

ଗଗନ : କେବଳ ପ୍ୟାକେଟ୍‌ଟା ଦୂରରୁ କାଗଜ ମିଶାକି ମତେ ଦେଖାଇ ପାରିବେ କି ?

ଦୋକାନୀ : ନା, ମୁଁ ସେ ଭୁଲ୍ କରିବି ନାହିଁ । ଦୋକାନରେ ଗ୍ରାହକମାନେ ଜିନିଷ ଛାଡ଼ିବା ଓ ଠିକଣା ଲୋକ ଚିହ୍ନି ଜିନିଷ ଫେରାଇବା ଏଇଟା ମୋ ପାଇଁ ନୂଆ କଥା ନୁହଁ ।

ସମର : ଆମେ ତ ପ୍ୟାକେଟ୍ ଖୋଲିକି ଦେଖାଇବା କଥା କହୁ ନାହୁଁ ।

ଦୋକାନୀ : ନା, ସେ କଥା ମୋତେ ହୋଇପାରିବ ନାହିଁ ।

ଗଗନ : ଆପଣ ଆମ କଥା ଟିକେ ବୁଝିବାକୁ ଚେଷ୍ଟା କରନ୍ତୁ । ଆମେ ଗୋଟେ ଅଡୁଆରେ ପଡି ଯାଇଛୁ ।

ଦୋକାନୀ : ମୁଁ ସେଥିରୁ କ'ଣ ପାଇବି ? ମୋତେ ସେ ଅଡୁଆ ଭିତରକୁ କାହିଁକି ଟାଣୁଛନ୍ତି ?

ଗଗନ : ଆମେ ଯେଉଁ ପ୍ୟାକେଟ୍‌ଟା ଏଠି ଛାଡ଼ି ଦେଇ ଯାଇଛୁ, ସେଟା ଆମ ନିଜର ନୁହଁ, ତେଣୁ ତା ଭିତରେ କ'ଣ ଅଛି, ଆମକୁ ଭଲ ଭାବରେ ଜଣା ନାହିଁ । ସେ ପ୍ୟାକେଟ୍‌ଟା ଭୁବନେଶ୍ୱରର ଜଣେ ଲୋକ ଆମ ହାତରେ ଗାଆଁରେ ରହୁଥିବା ତାଙ୍କ ମାମୁଙ୍କ ପାଖକୁ ପଠାଉଥିଲେ ।

ଦୋକାନୀ : ଏଇ ଟିକିଏ ଆଗରୁ ଆପଣ କହୁଥିଲେ ପଲିଷ୍ଟର ସାଟ୍ କନା ଅଛି ବୋଲି ?

ଗଗନ : ସେ ଭଦ୍ରଲୋକଙ୍କ ମାମୁ ଖଣ୍ଡେ ସାର୍ଟ କନା ପାଇଁ ମୋ

ହାତରେ ତାଙ୍କ ପାଖକୁ ଖଣ୍ଡେ ଚିଠି ଦେଇଥିଲେ । ସେ ଭଦ୍ରଲୋକ ଖୁବ୍ ଉଚ୍ଚ ଷ୍ଟାଟସ୍‌ର ଲୋକ । ସେଥିପାଇଁ ମୁଁ ଅନୁମାନ କରୁଥିଲି ଏଥିରେ ପଲିଷ୍ଟର ସାର୍ଟ କନା ଥିବ ।

ସମର : ପ୍ୟାକେଟ୍‌ଟା ଆମେ ଖୋଲିବାକୁ ସମୟ ପାଇନାହୁଁ । କିନ୍ତୁ ହାତକୁ ଲାଗୁଥିଲା ସେଥିରେ ପଲିଷ୍ଟର କନା ଥିବା ପରି ।

ଗଗନ : ଅନ୍ତତଃ ପ୍ୟାକେଟ୍‌ଟା ଆମକୁ ଦୂରରୁ ଦେଖାନ୍ତୁ । ଆମେ ଦେଖୁଁ ଯଦି ସେ ପ୍ୟାକେଟ୍‌ଟା ଆମର ହୋଇଥିବ ତାହେଲେ ଆମେ ଯାଇ ସେ ଭଦ୍ରଲୋକଙ୍କୁ ପଚାରି ଆସିବୁ ତା ଭିତରେ କ'ଣ ଅଛି ବୋଲି ?

ଦୋକାନୀ : ଆଚ୍ଛା ଠିକ୍ ଅଛି, ଦେଖାଉଛି । ଦେଖିଲେ ଏଇଟା ଆପଣଙ୍କ ପ୍ୟାକେଟ୍ ?

ଗଗନ : ହଁ, ହଁ । ଏଇଟା ଆମର । କିନ୍ତୁ ଏ ପ୍ୟାକେଟ୍ ଉପରେ ଖଣ୍ଡେ ଲାଲ୍ ରଙ୍ଗର ଉଲ୍ ସୂତା ଗୁଡ଼ାଯାଇଥିଲା । ସେ ଖଣ୍ଡକ କୁଆଡେ ଗଲା ?

ଦୋକାନୀ : ଏଇଠି, ଏଇ ଥାକରେ ଅଛି । ମୁଁ ଏ ଉଲ୍ ସୂତାଟା ଫିଟାଇ ଥାକରେ ପକାଇ ଦେଇଥିଲି । ଦେଖିଲେ ଏଇ ସୂତାଟା ତ ?

ସମର : ହଁ, ସେଇଟା ।

ଦୋକାନୀ : ନିଅନ୍ତୁ ଆପଣଙ୍କ ପ୍ୟାକେଟ୍ ।

ସମର : ଆଉ କିଛି ପ୍ରମାଣ ଦରକାର ନାହିଁ ?

ଦୋକାନୀ : ପ୍ରମାଣ ମିଳିଗଲା ।

ଗଗନ : କି ପ୍ରମାଣ ପାଇଲେ ?

ଦୋକାନୀ : ଏଇ ପ୍ୟାକେଟ୍ ଉପରେ ଯେ ଲାଲ୍ ରଙ୍ଗର ଉଲ୍ ସୂତା ଖଣ୍ଡେ ଗୁଡା ଯାଇଥିଲା ଆପଣ ସେ କଥା କହି ଦେବାରୁ ମୁଁ ପ୍ରମାଣ ପାଇଗଲି । ନିଅନ୍ତୁ ଆପଣଙ୍କ ପ୍ୟାକେଟ୍ ।

ଗଗନ : ଧନ୍ୟବାଦ ।

ସମର : ଆମେ ଏଥର ଆସୁଛୁ ଆଜ୍ଞା ।

ଦୋକାନୀ : ମୁଁ ଏତେ କଥା ପଚାରିଲି ବୋଲି କିଛି ଭାବିବେ ନାହିଁ ।

ଗଗନ : ସେଇଟା ତ ଆପଣଙ୍କ କର୍ତ୍ତବ୍ୟ । ଏଥିରେ ଭାବିବାର କ'ଣ ଅଛି । ପ୍ୟାକେଟ୍‌ଟା ଫେରି ପାଇଥିବାରୁ ଆମେ ଖୁବ୍ ଖୁସି । ଆମେ ଏଥର ଆସୁଛୁ ।

ଆନନ୍ଦ ଚନ୍ଦ୍ର ପତି

ଦୋକାନୀ : ହଉ ଆପଣ ଯାଆନ୍ତୁ ।

ସମର : ଗଗନବାବୁ ! ଖୋଲିଲ ଦେଖି ସେ ପ୍ୟାକେଟ୍ ଭିତରେ କ'ଣ ଅଛି ?

ଗଗନ : ଏମିତି ବ୍ୟସ୍ତ ହେଉଛ କାହିଁକି ? ଟିକେ ଯାତକୁ ଆସ । (ଦୁହେଁ ଦୋକାନଠୁ କିଛି ଦୂରକୁ ଗଲେ)

ସମର : ହଁ, ସେଇଠି ଖୋଲ ।

ଗଗନ : ଖୋଲୁଛି । (କାଗଜ ପ୍ୟାକେଟ୍ ଖୋଲିଲେ)

ସମର : ଆରେ ଏଇଟା ତ ଗୋଟେ ସାର୍ଟ ପରି ଦିଶୁଛି ।

ଗଗନ : ହଁ ତ ଏଇଟା ଗୋଟେ ପୁରୁଣା ରଦିଆ ସାର୍ଟ ।

ସମର : ଫିଟାଇଲ ଫିଟାଇଲ ଦେଖିବା । ଭଲ କି ଫିଟଉନା ?

ଗଗନ : ଦେଖୁନା ଦେଖ ।

ସମର : ଆରେ (ଚମକିପଡି) ଏଟାତ ....

ଗଗନ : ଏ ସାର୍ଟରେ କ'ଣ ଗୋଟେ କଣା...

ସମର : ଆଚ୍ଛା ଗଗନ ବାବୁ ! ବୃନ୍ଦାବନ ବାବୁ ଏତେ ବଡ ଚାକିରି କରିଛନ୍ତି, ଏତେ ଥାଟ୍‌ରେ ଅଛନ୍ତି ତାଙ୍କ ନିଜ ମାମୁଙ୍କ ପାଇଁ ଗୋଟେ ଚିରା ସାର୍ଟ । ମୁଁ ତ କିଛି ଭାବି ପାରୁନାହିଁ । ଏ ବଡ ଲୋକମାନେ ନିଜକୁ କ'ଣ ବୋଲି ଭାବନ୍ତି ?

ଗଗନ : ତମେ ବଡ ଲୋକ କାହାକୁ କହୁଛ ସମରବାବୁ ? ଏମାନଙ୍କ ଚକଚକ ପୋଷାକର ଘୋଡଣି ଭିତରେ ଯେଉଁ ମଣିଷଟି ମାନ ଲୁଚିଛନ୍ତି ସେମାନେ ନିହାତି ଛୋଟଲୋକ । ନିହାତି ଅମଣିଷ ।

ସମର : ଧରଣୀମାମୁ କିନ୍ତୁ ଏମାନଙ୍କଠୁ ମନରେ ଢ଼େର ବଡ଼ । ଢ଼େର ମହତ ତାଙ୍କ ଭିତରେ ଥିବା ମଣିଷଟା ।

ଗଗନ : ଏଇ ପୁରୁଣା ସାର୍ଟର କଣା ଭିତରେ ଦୂରକୁ ଖୁବ୍ ଦୂରକୁ ଚାହଁ ସମର ବାବୁ ! କ'ଣ କିଛି ଦେଖିପାରୁଛ ?

ସମର : ନାଁ, ମୁଁ କିଛି ଦେଖି ପାରୁନେଇଁ ।

ଗଗନ : କିଛି ଦେଖି ପାରୁନା ?

ସମର : ନାଁ ।

ଗଗନ : ମୁଁ କିନ୍ତୁ ଏ ଚିରା ସାର୍ଟର କଣା ଭିତର ଦେଇ ଧରଣୀ ମାମୁଙ୍କ ସରଳ, ନିଷ୍କପଟ ହସହସ ମୁହଁଟା ଦେଖି ପାରୁଛି । ମୁଁ ଶୁଣି ପାରୁଛି ତାଙ୍କର ଆନ୍ତରିକତା ଭରା କଥା ।

ଆନନ୍ଦ ଚନ୍ଦ୍ର ପଣ୍ଡା

(ଅନ୍ତରାଳରୁ ଧରଣୀମାମୁଙ୍କ କଣ୍ଠ ସ୍ୱର) - ତୋ ମାଇଁ ଯେମିତି ଅବୁଝା ହଉଚି, ତୁ ବି ସେମିତି ଅବୁଝା ହେଲୁ ? ମୁଁ କେମିତି ଭୁବନିଶ୍ୱର ଯିବି ? ମୋ ଭଣଜାର ଗୋଟେ ମାନ ସନମାନ ଅଛି । ପ୍ରତିଦିନ ତା ଘରକୁ କେତେ ବଡ଼ବଡ଼ ଲୋକ ଆସୁଥିବେ । ତା ଘରେ ଚପରାଶି ଅଛି, ତାର ନିଜର ମଟର ଗାଡ଼ି ଅଛି । ସିଏ ଯୋଉ ଘରେ ଭଡ଼ାରେ ଅଛି ସେ ଘର ଭଡ଼ା କୁଆଡ଼େ ଚାରି ହଜାର କି ପାଞ୍ଚ ହଜାର ଟଙ୍କା । ମୁଁ ଖାଲି ଦିହଟାରେ ତା ଘରକୁ କେମିତି ଯିବି ? ଫୁଙ୍ଗୁଳା ଦିହରେ ଭୁବନେଶ୍ୱର ଗଲେ ମୋ ଭଣଜାର ମୁହଁ ତଳକୁ ହବ ନେଇଁ ? ତୁ ଏ ଚିଠିଟା ନେ । କାଲି ସକାଳେ ଯେମିତି ହେଲେ ଆମ ବୃନ୍ଦାବନକୁ ଦବୁ । ଏ ଚିଠି ପାଇଲେ ସିଏ ତୋ ହାତରେ ଗୋଟେ କାମିଜି କନା ଦବ । ତୁ ସେ କାମିଜି କନା ଆଣିଲେ ମୁଁ ସେଇଥିରେ କାମିଜି କରିବି । ତାକୁ ପିନ୍ଧିକି ତୋ ସାଙ୍ଗେରେ ଭୁବନିଶ୍ୱର ଯିବି ।

ଗଗନ : କିନ୍ତୁ ଏଇ ବୃନ୍ଦାବନମାନେ ଯେତିକି ଉପରକୁ ଉଠନ୍ତି ନିଜ ଲୋକଙ୍କ ଠାରୁ ସେତିକି ଦୂରେଇ ଯାଆନ୍ତି । ଏତେ ଉପରୁ ତଳ ଜିନିଷ ଝାପ୍‌ସା, ଝାପ୍‌ସା ଦିଶେ । ସେମାନଙ୍କ ଆକାଶରୁ ସ୍ନେହ ଆଉ ସଂପର୍କର ସୂର୍ଯ୍ୟ ବୁଡି ଯାଇ ତାଙ୍କ ଚାରି ପାଖରେ ଘେରି ଯାଏ ମୁହଁସଂଜର ଅନ୍ଧାର । ସେମାନେ କାହାର ମୁହଁ ଚିହ୍ନି ପାରନ୍ତି ନାହିଁ । କିନ୍ତୁ ସେମାନେ ଭୁଲିଯିବା ଉଚିତ ନୁହେଁ ଯେ ସେମାନଙ୍କର ଏ ଉଡାଣ ସବୁ ଦିନିଆ ନୁହଁ । ଦିନେନା ଦିନେ ସେମାନଙ୍କୁ ପୁଣି ତଳକୁ ଓହ୍ଲାଇବାକୁ ହେବ ।





ଆନଂଦ ଚଂଦ୍ର ପହିଙ୍କ ଜନ୍ମ : ୧୯୪୬ ମସିହା, ଏପ୍ରିଲ ୧୧ ତାରିଖ । ଗ୍ରାମ : ନିତ୍ୟାନନ୍ଦପ୍ରସାଦ, ଢେଙ୍କାନାଳ । ଶ୍ରୀ ପହି ଜଣେ ବିଶିଷ୍ଟ ଗାଳ୍ପିକ ଓ ପ୍ରତିଷ୍ଠିତ ନାଟ୍ୟକାର ।

ଶ୍ରୀ ପହିଙ୍କ ଦ୍ୱାରା ରଚିତ କ୍ଷୁଦ୍ରଗଳ୍ପ ପୁସ୍ତକ :

- ❑ ଧିକ୍କାର
- ❑ ମୁହଁ ସଂଙ୍ଗ
- ❑ ଅନେକ ମୁହଁ
- ❑ ଅନ୍ୟ ଅରଣ୍ୟ
- ❑ ଷାଢ଼୍ୟ
- ❑ ଚରିତ୍ରର ଚିତ୍କାର

ଆନଂଦ ଚଂଦ୍ର ପହିଙ୍କ ଦ୍ୱାରା ରଚିତ ବେତାର, ଦୂରଦର୍ଶନ ଓ ମଞ୍ଚ ନାଟକ :

- ❑ ଅନ୍ୟ ଏକ ସିଦ୍ଧାର୍ଥ (ସର୍ବ ଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗିତା ୧୯୯୫-୯୬ ରେ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ)
- ❑ ଭାଙ୍ଗି ପଡୁଥିବା ଭୂମି (ସର୍ବଭାରତୀୟ ବେତାର ନାଟକ ରଚନା ପ୍ରତିଯୋଗିତା ୧୯୯୨-୯୩ରେ ଦ୍ୱିତୀୟ ଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ) (ପୁସ୍ତକ ଭାବେ ପ୍ରକାଶିତ)
- ❑ ରେଖାଚିତ୍ର ଆକାଶବାଣୀ ବାର୍ଷିକ ପୁରସ୍କାର ପ୍ରଦାନ ଉତ୍ସବ ୧୯୯୨ ରେ ମେରିଟ୍ ସାର୍ଟିଫିକେଟ୍ ପ୍ରାପ୍ତ (ପୁସ୍ତକ ଭାବେ ପ୍ରକାଶିତ)
- ❑ ହଜିଯାଇଥିବା ମଣିଷ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ପ୍ରତୀକ୍ଷାରେ ପରୀକ୍ଷିତ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ତୁଳ ବିଗତ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଆକାଶର ରଙ୍ଗ - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଡର - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଖାଲିହାତର ଛବି - (ପୁସ୍ତକ ଭାବେ ପ୍ରକାଶିତ)
- ❑ ଆଲୋକର ଅନ୍ଧକାର
- ❑ ଅନ୍ୟ ଅରଣ୍ୟ
- ❑ ଯନ୍ତା
- ❑ ନାଳଜଳି
- ❑ ଚିଠି
- ❑ ଆକ୍ସିଡେଣ୍ଟ
- ❑ ବୁଢ଼ିଆଣୀ ଜାଲ
- ❑ ଶୋଷ
- ❑ ଆନୁଆଲ୍ ଫଙ୍କସନ୍
- ❑ ଅଚିହ୍ନା ଅପରାଧ
- ❑ ନୂଆ ସକାଳ
- ❑ ସିଡ଼ି
- ❑ ପରିତ୍ୟକ୍ତ
- ❑ ଅମୁହାଁ ଦେଉଳ
- ❑ ମୁହଁ ସଂଙ୍ଗ
- ❑ କାଲି ଆଜି କାଲି
- ❑ ଆଗାମୀ ସୂର୍ଯ୍ୟୋଦୟ
- ❑ କୁଣିଆ ମେଳା
- ❑ ଝିଅଦେଖା
- ❑ ଋତୁ
- ❑ ସୂର୍ଯ୍ୟପଢାଗ
- ❑ ଦୃଷ୍ଟି
- ❑ ଦ୍ୱନ୍ଦ୍ୱଗ୍ରସ୍ତ ଦୁଇଟି ଫୁଲ
- ❑ ଅବୁଝା ରାତି
- ❑ ସଂପର୍କର ତିନିଗାର
- ❑ ଅନ୍ତରଙ୍ଗ ଆକର୍ଷଣ